# ଶ୍ରୀମଦ୍ ଭଗବଦ୍ ଗୀତା, ଭୋଲାନାଥ ବାବୁ ଓ ନଡ଼ିଆ ପାନଦୋକାନୀ

ସୌରୀବଁଧୁ କର





## ସୌରୀନ୍ଦ୍ର ବର

ଓଡିଆ ସାହିତ୍ୟର ଏକ ପ୍ରତିବଦ୍ଧ ସ୍ରଷ୍ଟା । ଦୀର୍ଘ ପଚିଶ ବର୍ଷଧରି ଗଳ୍ପ, ପ୍ରବନ୍ଧ, ଜୀବନୀ. ଭ୍ରମଣ କାହାଣୀ ଓ ଶିଶୁ ସାହିତ୍ୟ ରଚନା କରିବା ସହିତ ଜଣେ ସ୍ତମ୍ଭକାର ଭାବରେ ସୁପରିଚିତ ।

ମାର୍କସବାଦ ଓ ବେଦାନ୍ତର ସମନ୍ୱୟ ତାଙ୍କ ସୃଷ୍ଟିର ବୈଚିତ୍ର୍ୟ ।

ସାଧାରଣ ଜନ ଜୀବନ ସହିତ ଓତଃପ୍ରୋତ ଜଡିତ ହୋଇ କାର୍ଯ୍ୟ କରୁଥିବା ହେତୁ ତାଙ୍କ ଗଳ୍ପରେ ନିଷ୍ପେଷିତ, ନିର୍ଯ୍ୟାତିତ ଓ ନିଗୃହୀତଙ୍କର ସ୍ୱର ବେଶ୍ ସୁସ୍ପଷ୍ଟ ।

ରାଜ୍ୟ ଓ ସର୍ବଭାରତୀୟ ବହୁ ସାହିତ୍ୟ ଅନୁଷ୍ଠାନର ସେ ସକ୍ରିୟ ସଭ୍ୟ ଓ କର୍ମକର୍ତ୍ତା ।

ସଂପ୍ରତି ଭୁବନେଶ୍ୱରଠାରେ ଅବସ୍ଥାପିତ ।

## ଲେଖକଙ୍କ ଲେଖନୀରୁ

**ଗଳ୍ପ ସଂକଳନ :** ପ୍ରଥମା

ନିଷ୍ପ୍ରଭ ଏକଲବ୍ୟ

ନରୋତ୍ତମ ଷଡଙ୍ଗୀର ଡାଏରୀ

ବଉଳର ମହକ

**ପ୍ରବନ୍ଧ** ବେଦାନ୍ତର ସ୍ୱର

ମୋ ଭାଷା ମୋ ସାହିତ୍ୟ

ରାଷ୍ଟ୍ରନିର୍ମାତା ନେହେରୁ

**ଶିଶୁ ସାହିତ୍ୟ :** ବାବା ସାହେବ ଆମ୍ବେଦକର

ଯୁଗ ପ୍ରବର୍ତ୍ତକ ସ୍ୱାମୀ ବିବେକାନନ୍ଦ

**ଜୀବନୀ** ପରମହଂସ ଶ୍ରୀ ରାମକୃଷ୍ଣ

ସ୍ୱାମୀ ବିବେକାନନ୍ଦ

ସାଧୁ, ସନ୍ଥ, ମହାତ୍ମା

ବାବା ସାହେବ ଆମ୍ବେଦକର

**ଅନୁବାଦ** ଇନ୍ଦ୍ରାର ନାମ ପୁତ୍ର - (ଉପନ୍ୟାସ)

ପ୍ରତିଦ୍ୱନ୍ଦ୍ୱୀ (ଉପନ୍ୟାସ)

# ଶ୍ରୀମଦ୍ ଭଗବଦ୍ ଗୀତା ଭୋଳାନାଥ ବାବୁ ଓ ନରିଆ ପାନଦୋକାନୀ

ସୌରୀବନ୍ଧୁ କର

ଗଦ୍ୟ ପ୍ରକାଶନୀ
ଭୁବନେଶ୍ୱର

ଶ୍ରୀମଦ୍ ଭାଗବଦ୍ ଗୀତା
ଭୋଳାନାଥ ବାବୁ ଓ ନରିଆ ପାନଦୋକାନୀ
(ଗଳ୍ପ ସଂକଳନ)

ଲେଖକ :
ସୌରୀବନ୍ଧୁ କର

ପ୍ରକାଶକ :
ସିଦ୍ଧାର୍ଥ କୁମାର କର
ଗଦ୍ୟ ପ୍ରକାଶନୀ, ପ୍ଲଟନଂ - ୫୦୧୨/୫୮୫୩
ଗଜପତି ନଗର, ଭୁବନେଶ୍ୱର - ୭୫୧୦୦୫

ପ୍ରଥମ ପ୍ରକାଶ :
ରଥଯାତ୍ରା : ୨୦୦୦

ଅକ୍ଷର : ଗୀତା ପ୍ରେସ୍ ଓ ପବ୍ଲିକେଶନସ୍

ମୁଦ୍ରଣ : ଓଁକାର

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ମୂଲ୍ୟ : ଟ. ୬୦/-

Srimad Bhagabad Gita
Bholanath Babu O'Naria Panadokani
(Short story collection)

By :
**Souribandhu Kar.**

Publisher :
**Siddharth Kumar Kar**
Gadya Prakashani
Plot No. 5012/5853
Gajapati Nagar
Bhubaneswar - 751005

First Published :
**Ratha Yatra - 2000**

Type setting :
**Geeta press and publications**

Printer :
**Omkar**

Cover design :
**Bijay Kumar Pradhan**

Price : **Rs. 60/-**

# ସୂଚୀପତ୍ର

ଯଶସ୍ୱୀ କଥାକାର ଓ ସହୃଦୟ
**ଶ୍ରୀଯୁକ୍ତ ସାତକଡି ହୋତାଙ୍କୁ**
ସମ୍ମାନ ଓ ଶ୍ରଦ୍ଧାର ସହ
ଏହି ବହିଟିକୁ ସମର୍ପଣ କଲି

ସୌରୀବନ୍ଧୁ କର

# ବିଚିତ୍ର ବର୍ଣ୍ଣା

ଗଙ୍ଗା କୂଳରେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇନଥାଏ । ବାରଣାସୀ ଘାଟରେ ପତିତପାବନୀ ଗଙ୍ଗା ବକ୍ଷରେ ବୁଡପକାଇ ଜନ୍ମଜନ୍ମାନ୍ତର ତପସ୍ୟାର ସିଦ୍ଧିଲାଭ କରିବାର ଅଦମ୍ୟ ଇଚ୍ଛା ସିଦ୍ଧାର୍ଥକୁ ବହୁ ଦୂରରୁ ଟାଣିନେଇ ଆସିଥାଏ । ଅନେକ ଦିନର ସ୍ୱପ୍ନ ସିଦ୍ଧାର୍ଥ ପାଇଁ । ପିଲାଟି ଦିନରୁ ସେ ଶୁଣିଥାଏ ଶ୍ରୀ ଗଙ୍ଗା ମାହାତ୍ମ୍ୟ ତା ବୋଉଠାରୁ । ଖରସୁଆଁ ନଈକୁ ଗାଧୋଇ ଯିବାବେଳେ ବୋଉ ତାକୁ କେତେଥର କହିଥାଏ, "ବଡ ହେଲେ ବାପା ଯାଇ ଗଙ୍ଗାରେ ଗାଧୋଇ ପଡିବୁ । ମୁଁ ତ ଗଙ୍ଗା ଦେଖି ପାରିଲି ନାହିଁ । ଆଉ ଦେଖିବାର ଆଶା ନାହିଁ । ତୁ ମୋ ଅସ୍ଥିକୁ ନେଇ ଗଙ୍ଗାରେ ପକାଇବୁ ।" ବୋଉ କଥାକୁ ମନେରଖି ସିଦ୍ଧାର୍ଥ ଅନେକଥର ଗାଧୋଇବାର କଳ୍ପନା କରିଛି, ସ୍ୱପ୍ନ ଦେଖିଛି । ବୋଉ ମଲାପରେ ସତକୁ ସତ ତାର ଅସ୍ଥିକୁ ନେଇ ପ୍ରୟାଗଠାରେ ପକାଇଛି । ଗଙ୍ଗା ଯମୁନା ତ୍ରିବେଣୀର ସଂଗମ ସ୍ଥଳରେ ବୁଡ ପକାଇଛି । କିନ୍ତୁ ଦେଖିପାରିନି ଗଙ୍ଗାର ସେହି ଲୋଭନୀୟ ମୂର୍ତ୍ତି । ଯେଉଁ ଲୋଭନୀୟ ମୂର୍ତ୍ତି ଅନେକଥର ଅନେକ ମୁହୂର୍ତ୍ତରେ ଋଷିମୁନୀଙ୍କଠାରୁ ସାଧାରଣ ଲୋକଙ୍କୁ ଆକୃଷ୍ଟ କରିଛି । କିଏ ଦେଖିଛି ସେ ମୂର୍ତ୍ତିକୁ । କିଏ କହିପାରିବ କେଉଁଠୁ ଆସି କେଉଁଠି ମିଶିଯାଇଛି ଗଙ୍ଗାର ଧାର । ହିମାଳୟ ଚୋଟିରୁ ଖସିଲାବେଳେ କେମିତି ସେ ନିଜକୁ ହଜାଇ ଦେଇଛି । କେହି ସମୁଦ୍ରକୁ ମନେ ରଖିନି, କିନ୍ତୁ ସମସ୍ତେ ମନେ ରଖୁଛନ୍ତି ଗଙ୍ଗାକୁ । ଇତିହାସରମୂକସାକ୍ଷୀ କଣ ଗଙ୍ଗା ? କେତେ ଇତିହାସ ତାରି କୋଳରେ ଘଟିଯାଇଛି । ମହାଭାରତରେ ପିତାମହ ଭୀଷ୍ମଙ୍କର ପତନ ଦେଖିବାଠାରୁ ମୋଗଲ ସାମ୍ରାଜ୍ୟର ଧ୍ୱଂସ ଦେଖିଛି, ଆଉ ଦେଖିଛି ଫର ଫର ଉଡୁଥିବା ୟୁନିୟନ୍ ଜ୍ୟାକ୍‌ର ପତନ । ତଥାପି ସେ ବହି ଚାଲିଛି । ଯେମିତି କିଛି ଘଟିନି । କିଛି ଘଟିବାର ନଥିଲା ବା ନାହିଁ । କେତେବେଳେ ଶସ୍ୟଶ୍ୟାମଳା ଶସ୍ୟକ୍ଷେତ୍ରର ଲହ ଲହ ହଲୁଥିବା ପତ୍ର ଦେହରେ, ତା ଦେହ ଉପର ଦେଇ ବହିଯାଉଥିବା ଶୀତଳ ପବନର

ସ୍ପର୍ଶ ସେ ଦେଇଛି କେତେବେଳେ କାରଖାନା ଚିମ୍‌ନିରୁ ଧୂଆଁ ବାହାରି ତା ଦେହ ଉପରେ ନେସି ହୋଇ ଯାଇଛି । ତା ପାଣିକୁ ଅପରିଷ୍କାର କରିଛି ।

ଗଙ୍ଗା ବହି ଚାଲିଛି । ବହି ଚାଲିଛି ଯେମିତି କେଉଁ ଯୁଗରୁ, କେଉଁ କାଳରୁ । ମୁହୂର୍ତ୍ତ ମୁହୂର୍ତ୍ତର ଘଟଣାକୁ ସମୟ ପୁସ୍ତକର ପର୍ଦ୍ଦ ଭିତରେ ସାଇତି ରଖିଛି । କେତେ ଭଙ୍ଗା ଗଢା ଘଟଣାକୁ ଦେଖିଛି ସିନେମାର ରୂପେଲି ପରଦାରେ ଘଟୁଥିବା ଘଟଣା ମାନଙ୍କ ପରି । ସେଇ ଗଙ୍ଗାର ରୂପକୁ ଦେଖିବାକୁ ଆସିଛି ସିଦ୍ଧାର୍ଥ । ଅନେକ ଦିନର ସ୍ୱପ୍ନ । ତା କଳ୍ପନାର ଗଙ୍ଗା । ତ୍ରିବେଣୀ ବୁଡ ପକାଇବା ବେଳେ ସେ ଗଙ୍ଗାକୁ ଦେଖିନଥିଲା । ତା କାନରେ ଗଙ୍ଗା ଜଳର ମଧୁର ବାଣ୍ଟୀ ପଶିଯାଇନଥିଲା । କାରଣ ତା ମନଭିତରେ ତା ବୋଉର ରୂପ ଥିଲା । ତା ବୋଉର ଅନେକ ଦିନର ଆଶାକୁ ସେ ମଲାପରେ ପୂରଣ କରୁଥିବାରୁ ସେ ମନେ ମନେ ବୋଉର ରୂପକୁ ଚାହିଁ ଗଙ୍ଗାର ରୂପକୁ ଭୁଲିଯାଇଥିଲା ।

ବୋଉର ରୂପ କଣ ଗଙ୍ଗା ରୂପ ଥିଲା ସେତେବେଳେ ତା ପାଇଁ ? ତା ବୋଉ ଭିତରେ ସେ ଦେଖିବାକୁ କାହିଁକି ଚାହିଁନଥିଲା ମା ଗଙ୍ଗାକୁ ? କାହିଁକି ସେଦିନ ସେ ଭୁଲିଯାଇଥିଲା ବୋଉ ଓ ମା ଗଙ୍ଗା ଯେ ଏକ ଓ ଅଭିନ୍ନ । ସେଇ ମନରେ ରହିଯାଇଥିବା ଦୁଃଖକୁ ଦୂର କରିବା ପାଇଁ ଆଜି ପୁଣି ଥରେ ବନାରସରେ ପାଦଦେଇଛି ସିଦ୍ଧାର୍ଥ ଓ ବନାରସ ଘାଟରେ ପହଂଚିଯାଇଛି ଦେଖିବାକୁ ମା ଗଙ୍ଗାକୁ ।

ପଥର ପାହାଚ କୂଳରେ ବସି ରହି ଗଙ୍ଗା ବକ୍ଷକୁ ଚାହିଁଦେଉଥିଲା । ଅନେକ ଲୋକଙ୍କର ଭିଡ । ଯେମିତି ସମଗ୍ର ଭାରତ ଏକ ହୋଇ ଏହିଠାରେ ଆସ୍ଥାନ ଜମାଇଛନ୍ତି । ସମସ୍ତଙ୍କର ଇଚ୍ଛା ଗଙ୍ଗା ବକ୍ଷରେ ଟିକିଏ ଘୁରି ଆସନ୍ତେ । ଆଞ୍ଜୁଳାଏ ଲେଖାଏଁ ପାଣି କେହି ମୁଣ୍ଡ ଉପରେ ଛିଂଚିଦେବାକୁ ଚେଷ୍ଟା କରୁଛି । ଅନ୍ୟ କେହି ଜୟ ଗଙ୍ଗାମାୟିକୀ କହି ବୁଡ ପକାଉଛି । ଦୋକାନର ପସରା ମେଲି ବସିଛନ୍ତି । ବ୍ୟବସାୟୀ ବୁଦ୍ଧିଗଙ୍ଗା କୂଳର ଧର୍ମପ୍ରାଣା ମହିଳାଙ୍କୁ ଆକୃଷ୍ଟ କରୁଛି । ଭଳି ଭଳିକି ଜିନିଷ, ଗଙ୍ଗା ପାଣି, ଗଙ୍ଗା ଫଟୋ । ଯାତ୍ରୀ ମାନଙ୍କର ଉତ୍କଣ୍ଠା ଓ ଆଗ୍ରହକୁ ବଢାଇବାରେ ସାହାଯ୍ୟ କରୁଛି କିମ୍ବଦନ୍ତୀର କାହାଣୀ । ସବୁ ଜିନିଷ ସହିତ କିମ୍ବଦନ୍ତୀ ଲାଗିରହିଛି । ଅନର୍ଗଳ ହିନ୍ଦୀରେ ନାଉରିଆ କହିଚାଲୁଛି, "ହେ ବାବୁ ! ଏକ୍ ଏକ୍ ଆଦମିକୋ ପାଞ୍ଚ ପାଞ୍ଚ ରୁପୟା ଦୋ । ହମ ତୁମକୋ ଗଂଗାକେ କିନାରେ ଲେକର ଯିତ୍‌ନେ ଘାଟ୍ ହେ ଦେଖାଦୁଙ୍ଗା । ମାଲୁମ ହେ ଇହାଁ ବହୁସାରେ ଘାଟ । ଦଶାଶ୍ୱମେଧ ଘାଟ ଯିଧର ହରିଶ୍ଚନ୍ଦ୍ର ନେ ରୋହିତାଶ୍ୱ କୋ ଅଗ୍ନିମେ ରଖନେକେ ଲିୟେ ଶୈବ୍ୟା ରାଣିକୋ ପୈଶା ମାଙ୍ଗା ଥା; ଉସକେ ବିଦ୍ ବହୁତ୍ ସାରେ ଘାଟ । ହମ୍ ଆପ ଲୋଗୋଁକୋ ବତାଉଙ୍ଗା । ଆଇୟେ । ପାଞ୍ଚ ରୁପୟା ଥୋଡା ହି ହୈ ତୋ ।"

ଦଳ ଦଳ ଯାତ୍ରୀ ବେଶ୍ ପ୍ରଭାବିତ ହୋଇ ସେହି ଡଙ୍ଗା ମାନଙ୍କରେ ଗଂଗା ବକ୍ଷର ତଟଦେଶରେ ଘୂରି ଆସୁଛନ୍ତି । ବନାରସଠାରେ ଗଙ୍ଗା ଓଲଟି ପ୍ରବାହିତ ହେଉଛି । ପୂର୍ବରୁ ପଶ୍ଚିମ । ସିଦ୍ଧାର୍ଥ ସେହି ଲମ୍ବା ପାହାଚରେ ବସି ଗଙ୍ଗାମୟାକୁ ଚାହୁଁଛି ଏବଂ ଆଗତ ଯାତ୍ରୀ ମାନଙ୍କର ଧର୍ମଲାଭର ବ୍ୟାକୁଳତାକୁ ଲକ୍ଷ୍ୟକରୁଛି ।

ନୂଆ ବାହାହୋଇ ଆସିଥିବା ବର-ବୋହୂ ଗଙ୍ଗାମାତାକୁ ଅର୍ଚ୍ଚନା କରିବାକୁ ପରିବାର,

ଶୃଭେଚ୍ଛୁମାନଙ୍କୁ ଧରି ଦଳ ଦଳ ପହଞ୍ଚିଯାଉଛନ୍ତି । ଡଙ୍ଗା ଉପରେ ବସି ପୂଜାର୍ଚ୍ଚନା କରୁଛନ୍ତି । ଗଙ୍ଗାମାୟୀଙ୍କର ସେହି ପବିତ୍ର ପାଣିକୁ ମୁଣ୍ଡରେ ମାରି ଜନ୍ମ ଜନ୍ମାନ୍ତ ପତିପତ୍ନୀ ବ୍ରତ ପାଳିବାକୁ ଶପଥ ନେଉଛନ୍ତି । ବ୍ରାହ୍ମଣ ମାନଙ୍କ ମନ୍ତ୍ରଧ୍ୱନି ଗଙ୍ଗା କୂଳରେ ପ୍ରତିଧ୍ୱନିତ ହେଉଛି ।

କେହି କାହାକୁ ଅନେଇବାକୁ ସମୟ ନାହିଁ । ପ୍ରତ୍ୟେକ ନିଜ ନିଜ କାର୍ଯ୍ୟରେ ମଗ୍ନ । ଯେମିତି ସବୁ ଠିକ୍ ଠାକ୍ ଚାଲିଛି । ଜଟା ବଲ୍କଳ ପରିହିତ ସନ୍ନ୍ୟାସୀ ଧୂନୀ ଜାଳି ସେହି ପାହାଚର ଏକଣା କୋଣରେ ବସି ଧ୍ୟାନସ୍ଥ ହେବାବେଳେ, ତା ପାଖରେ କାଳିଆ କୁକୁର ଗୁଡାକ ଭୋ ଭୋ କରି ନେସି ହୋଇ ଦୌଡି ଯାଉଛନ୍ତି । ବୁଲା ଷଣ୍ଢମାନେ କେବେ କେବେ ପାହାଚ ଆଡକୁ ମାଡିଆସି ଫିଙ୍ଗାଯାଉଥିବା ପତ୍ର ଠୋଲା ଓ ତା ଭିତରେ ଲାଗିଥିବା ଛତୁକୁ ଗର୍ଭସ୍ଥ କରୁଛନ୍ତି ।

ସିଦ୍ଧାର୍ଥ ଦେଖୁଥିଲା କିଏ ନାହିଁ ଗଙ୍ଗାକୂଳରେ । କେହି ବଞ୍ଚିବାକୁ ଇଚ୍ଛା କରୁଛି, କେହି ଅର୍ଥ ଉପାର୍ଜନ କରୁଛି, କେହି ଧର୍ମ ସଞ୍ଚୟ କରୁଛି । ପ୍ରତ୍ୟେକେ ଯେପରି ନିତ୍ୟନୈମିତ୍ତିକ ଭାବରେ ନିଜ ନିଜ କାର୍ଯ୍ୟରେ ମଗ୍ନ । ଯେପରି ଗଙ୍ଗାମାତା କାହାକୁ ଭ୍ରୂକ୍ଷେପ ନକରି ତା କାମ କରି ଚାଲିଛି ।

ଆନମନା ଭାବେ ବିଦେଶିନୀ ମହିଳା ଜଣକ ଶ୍ୱେତାଙ୍ଗ ପୁରୁଷର କାନ୍ଧଉପରେ ଓହଳିପଡି ଗଙ୍ଗାରେ ନୌକାବିହାର କରିବାକୁ ଅଳିକରୁଛି । ଅନେକ ଗୁଡିଏ ବିଦେଶୀ ଗଙ୍ଗାକୂଳରେ ବୁଲୁଥିଲେବି ଏହି ଦମ୍ପତି ଦ୍ୱୟ ଉପସ୍ଥିତ ଜନତାର ଦୃଷ୍ଟିକୁ ଏଡାଇ ପାରୁନାହାନ୍ତି । ଶ୍ୱେତାଙ୍ଗ ରମଣୀର ସୁନ୍ଦର ଚେହେରା ଏବଂ ଭାରତୀୟ ନାରୀମାନଙ୍କ ପରି ପିନ୍ଧିଥିବା ଲୁଗାରୁ ଭାରତୀୟ ସଂସ୍କୃତି ପ୍ରତି ଆଦର ରହିଥିବାର ଅନୁମାନ ହେଉଛି ।

ସିଦ୍ଧାର୍ଥ ଭାରତର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କଥା ଚିନ୍ତାକଲାବେଳେ ଗଙ୍ଗାକୂଳରେ ଘଟୁଥିବା ଏହି ବୈଚିତ୍ର୍ୟମୟ ଦୃଶ୍ୟରାଜିକୁ ଦେଖିବାକୁ ଭୁଲୁ ନାହାନ୍ତି । ସେ ଏହି ଶୀତସନ୍ଧ୍ୟାରେ, ଗଙ୍ଗାବକ୍ଷରେ ଥରେ ଘୂରି ଆସିବାକୁ ମନ କଲେ । ଏଥରକୁ ମିଶାଇ ଦିନକ ଭିତରେ ତିନିଥର ସେ ସେହି ଘାଟକୁ ଆସି ଘଣ୍ଟା ଘଣ୍ଟା ସମୟ ବିତାଇ ଫେରି ଯାଇଛନ୍ତି । ଅତି ପ୍ରତ୍ୟୁଷରୁ ଉଠି, ବୋଉ କଥାକୁ ମନେପକାଇ ଗଙ୍ଗାସ୍ନାନସାରି କାଶୀ ବିଶ୍ୱନାଥ ଦର୍ଶନ ସହିତ ଧର୍ମଖାତାରେ କିଛି ପୁଣ୍ୟ ଯୋଡିବାର ଚେଷ୍ଟା କରିଛନ୍ତି । ସନ୍ଧ୍ୟାରେ ଗଙ୍ଗାବକ୍ଷରେ ବୁଲିବାର ଇଚ୍ଛା । ପ୍ରତ୍ୟୁଷ, ମଧ୍ୟାହ୍ନ ଓ ସନ୍ଧ୍ୟାରେ ଗଙ୍ଗାଙ୍କର ଲୋଭନୀୟ ମୂର୍ତ୍ତି ଦେଖିବାର ଲୋଭ ସମ୍ବରଣ କରିପାରିନାହାନ୍ତି ସେ ।

ଡଙ୍ଗାବାଲା ସହିତ ଦର କଷାକଷି ଚାଲିଛି । ଦିଜଣକୁ ନେବ ପଚାଶଟଙ୍କା । ସିଦ୍ଧାର୍ଥ ସହିତ ରହିଛି ସୁକାନ୍ତ । ତାରବନ୍ଧୁ । ବନାରସରେ ରହେ । ତାକୁ ବନାରସ ଖାସ୍ ଯେମିତି କିଛି ଲାଗୁନାହିଁ । ନିତି ନିତି ଦେଖି ତା ମନ ଘରମୁହାଁ ଧରିଛି । ସିଦ୍ଧାର୍ଥ ନାଉରିଆକୁ ଲକ୍ଷ୍ୟକରି ଭଙ୍ଗା ଭଙ୍ଗା ହିନ୍ଦୀରେ କହିଲେ, ''ଭୈୟା ! ଥୋଡା ହମ୍‌କୋ ଘାଟକେ ବାରେମେ ବୁଝାଯୋ । ହମ୍ ଲୋଗ ବାହାର ସେ ଆୟେ । କୁଛ୍ ଜାନ୍‌ନେକୋ ହି ଚାହତା ହେ ।''

ନାଉରିଆ ବେଶ୍ ବୁଦ୍ଧିମାନ । ଅନେକ କଥା ଜାଣିଛି । ଢେର ସାରା । କିମ୍ବଦନ୍ତୀ ବାରମ୍ବାର ଯାତ୍ରୀମାନଙ୍କୁ କହି, ତାର ମୁଖସ୍ଥ ହୋଇଯାଇଛି । ସେ ସିଦ୍ଧାର୍ଥଙ୍କୁ ବିଭିନ୍ନଘାଟର କିମ୍ବଦନ୍ତୀ କହି ଚାଲିଥାଏ । ତା ମୁହଁକୁ ଚାହିଁ ଭାବୁଥାଏ ସିଦ୍ଧାର୍ଥ କେଉଁ ବିଶ୍ୱବିଦ୍ୟାଳୟ ଶ୍ରେଣୀଗୃହରେ ବସି ଅଧ୍ୟାପକ ପଢାଉଥିବା ଇତିହାସ ଶୁଣୁଛି । ଏତେ ଟିକିନିଖି ବିବରଣୀ କେମିତି ଏଇ ପାଠ ପଢିନଥିବା ନାଉରିଆ

ଜାଣିପାରିଲା, ତାହା ଅନ୍ୟ ଏକ ଆଶ୍ଚର୍ଯ୍ୟ ଘଟଣା ବୋଲି ସେ ଆବିଷ୍କାର କରିଥିଲେ ହେଁ ଯୁଗ ଯୁଗ ଧରି ଭାରତର ପାଣି ପବନରେ ଆଧ୍ୟାତ୍ମିକ ବନ୍ୟା ପ୍ରବାହିତ ହେଉଛି, ତାର ଚାକ୍ଷୁସ ସତ୍ୟକୁ ଉପଲବ୍ଧ କରିଥାଏ । ଆକାଶରେ ଜହ୍ନର ତୋଫା ଆଲୁଅ ଗଙ୍ଗାବକ୍ଷରେ ପଡି ଶୁଭ୍ର ଫୁଲ ଶଯ୍ୟାର ଭ୍ରମ ସୃଷ୍ଟି କରୁଥାଏ । ଡଙ୍ଗାରେ ବସି ଚାହିଁଛି ସିଦ୍ଧାର୍ଥ କାହିଁ କେତେ ଦୂରକୁ । ମଣିଷ ବିବର୍ତ୍ତନର ଇତିହାସ, ଭାରତୀୟ ଜନଜୀବନ ସହିତ ଗଙ୍ଗାନଦୀର ଆତ୍ମିକ ସମ୍ପର୍କ ।

ଡଙ୍ଗାରୁ ଓହ୍ଲାଇ ପଥର ପାହାଚ ଉପରେ ଚଢିବା ସମୟରେ ସିଦ୍ଧାର୍ଥର ଚକ୍ଷୁ ଏକ ବିଚିତ୍ର ଦୃଶ୍ୟ ଦେଖେ । ସେହି ବିଦେଶିନୀ ଦମ୍ପତି ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ପରସ୍ପର କୁଣ୍ଢା କୁଣ୍ଢି ହୋଇ ନିଜ ଦେହରେ ଗଙ୍ଗାର ପଟୁ ମାଟିକୁ ଲେପି ହେଉଛନ୍ତି ଏବଂ ଜୟ ଗଙ୍ଗା ମାୟାଜୀ ଜୟ ବୋଲି ଶବ୍ଦ କରୁଛନ୍ତି । ସାପୁଆ କେଳା ସାପ ଖେଳାଇବା ବେଳେ ଲୋକମାନେ ବେଢିଥିବା ପରି ଦଳ ଦଳ ମଣିଷ ତାଙ୍କୁ ବେଢିଯାଇ ସେମାନଙ୍କର ବିଚିତ୍ର ରୂପକୁ ନିରୀକ୍ଷଣ କରିବାରେ ଲାଗିଥାନ୍ତି । ଦିଗମ୍ବର ବେଶରୂପୀ ଶ୍ୱେତାଙ୍ଗ ଯୁବକ ଶ୍ୱେତାଙ୍ଗ ଯୁବତୀ ଦେହରେ ଗଙ୍ଗାପଟୁ ଲିପିବାରେ ବ୍ୟସ୍ତ ରହି ବାରମ୍ବାର ତାଙ୍କର ପାଦଯୁଗଳକୁ ଧରି ସାଷ୍ଟାଙ୍ଗ ପ୍ରଣାମ କରୁଥାଏ ଏବଂ "ତୁମ୍ଭେ ମୋର ଗଙ୍ଗାମାୟୀ ବୋଲି କହି ଚାଲିଥାଏ ।"

କୌତୁହଳୀ ଜନତା ନଗ୍ନବେଶୀ ଏହି ଦମ୍ପତୀଙ୍କୁ ଆହୁରି ଉତ୍ତେଜିତ କରିବାକୁ ପଥର ପାହାଚ ଉପରେ ପଡିଥିବା ଛଡା ଫୁଲକୁ ସେହି ରମଣୀ ଉପରକୁ ଫିଙ୍ଗି "ଜୟ ଗଙ୍ଗାମାୟାକୀ ଜୟ" ବୋଲି ରହି ରହି ଉଚ୍ଚସ୍ୱରରେ ଧ୍ୱନୀ କରୁଥାନ୍ତି । ଆସ୍ତେ ଆସ୍ତେ ଭିଡ଼ ବଢି ଚାଲିଥାଏ ।

ସ୍ଥିର ମୁଦ୍ରାରେ ବସିଥିବା ରମଣୀ ସମ୍ମୁଖରେ ନତଜାନୁ ହୋଇ ପୁରୁଷଟି ବାରମ୍ବାର ପ୍ରାର୍ଥନା କରୁଥାଏ, "ହେ ମାତ ! ମୋତେ ମୁକ୍ତି ଦରକାର । ମୋତେ ତୋ କୋଳରେ ଆଶ୍ରୟ ଦେ ମା । ମୁଁ କେତେ ବର୍ଷଧରି ବିଶ୍ୱବ୍ରହ୍ମାଣ୍ଡ ବୁଲି ବୁଲି ତୋ ନିକଟରେ ପହଞ୍ଚିଛି । ତୁ ପତିତପାବନୀ, ପତିତ ଜନଙ୍କୁ ଉଦ୍ଧାର କରିବା ପାଇଁ, ଭଗୀରଥଙ୍କ ଅନୁରୋଧକୁ ଏଡିନପାରି, ସାଗର ବଂଶକୁ ଉଦ୍ଧାର କରିବାକୁ ଏଠାରେ ଆସି ପହଞ୍ଚିଛୁ । ମୋର କିଛି ଦରକାର ନାହିଁ । କେବଳ ତୋର ଶୀତଳ କୋଳରେ ମୁଣ୍ଡରଖି ଆଖିବୁଜିଦେବି ।" ଦେବୀ ଆସନରେ ଅଧିଷ୍ଠିତା ସେହି ନାରୀଟି ଠିଆ ହୋଇଯାଇ ପୁରୁଷଟିକୁ ଉଠାଏ ଏବଂ ଉଭୟ ଗଙ୍ଗାବକ୍ଷକୁ ଚାହିଁ କୁଣ୍ଢାକୁଣ୍ଢି ହୋଇ ପଥର ପାହାଚ ଅତିକ୍ରମ କରିବାକୁ ଆଗେଇ ଚାଲିଥାନ୍ତି । ପାହାଚ ପରେ ପାହାଚ । ଯେପରି ପ୍ରତ୍ୟେକ ପାହାଚ ମୁକ୍ତିର ବାଟ ଉନ୍ମୁକ୍ତ କରୁଥାଏ । ଶେଷ ପାହାଚରେ ପହଞ୍ଚି, ସମବେତ ଜନତାକୁ ଚକିତକରି ହଠାତ୍ ଦୁହେଁ ଗଙ୍ଗାବକ୍ଷକୁ ଲମ୍ଫପ୍ରଦାନ କରନ୍ତି । 'ହା', 'ହା', 'କ୍ୟା ହୁଆ', 'କ୍ୟା ହୁଆ' ଶବ୍ଦଭିତରେ ଗଙ୍ଗାବକ୍ଷରେ ହଜିଯାଇଥାନ୍ତି ସେହି ଦମ୍ପତିଦ୍ୱୟ ।

ଗହଳି ଜନତା ଭିଡ ଠେଲା ପେଲା ହୋଇ ପାହାଚ ଅତିକ୍ରମ କରିବାବେଳେ କହିବାରେ ଲାଗିଥାନ୍ତି, 'ୟେ ଦୋନୋ କିତ୍‌ନେ ପୁଣ୍ୟବାନ ଥେ, ଉନ୍‌କୋ ମୁକ୍ତି ମିଲ୍ ଗୟା ।'

ସିଦ୍ଧାର୍ଥ ଚାହିଁ ରହିଥାଏ ଗଙ୍ଗାର ଶୀତଳ ଜଳକୁ ଓ ବହୁ ଦୂରରେ ଉଠୁଥିବା ଦଶ୍ୱାଶମେଧ ଘାଟର ଅଗ୍ନିଶିଖାକୁ ।



# ଅଚଳ ଦୋଅଣି

ପାହାନ୍ତିଆ ପହରରୁ ଆକାଶରେ ସୂର୍ଯ୍ୟଙ୍କର ଲୋହିତ କିରଣ ଆସିବା ପୂର୍ବରୁ ଗୁରୁବାରୀ ମା ବଡ ପାଟିରେ ଡାକ ଛାଡ଼ିଲା, "ରେ ଗୁରୁବାରୀ । କେତେ ଶୋଇବୁ । କାମକୁ ଯିବୁ ପରା । ଛଅଟା ବେଳକୁ ତୋ ଫ୍ୟାକ୍ଟେରୀର ଶିଙ୍ଗା ବାଜିବ । ଆଉ କେତେ ସମୟ ରହିଲା । ଉଠ୍, ଉଠ୍, ମୁହଁ ଧୋଇପକା । ମୁଁ ତୋତେ ପଖାଳ ପୁଞ୍ଜେ ବାଢ଼ି ଦେଉଛି ।"

ନିଦ ମଳ ମଳ ହୋଇ ଉଠିଲା ଗୁରୁବାରୀ । ମା କଥା ତାକୁ ବିରକ୍ତ ଲାଗୁଥିଲା । ସକାଳ ପହରୁ ନିଦଟା ମାଡି ବସିଥିଲା ତାକୁ । କଷ୍ଟାରୁ ଦେହଟା ଉଠୁ ନଥିଲା । କାଲି ରାତିରେ ଫ୍ୟାକ୍ଟେରୀରୁ ଫେରିବାବେଳେ କେଉଁଠି ଆସି ହଠାତ୍ ଅସରାଏ ବର୍ଷା ତା ଉପରେ କଚାଡି ହୋଇ ପଡିଲା । ଘରେ ପହଞ୍ଚିବାବେଳକୁ ରାତି ଦଶଟା ।

ବାଟରେ ତା ସାଙ୍ଗ ଚକ୍ରେଇ ନାୟକ ସାଙ୍ଗେ ଦେଖା ହୋଇଗଲା । ଚକେଇ ନାୟକ ମଞ୍ଚେଶ୍ୱର ରେଳ କାରଖାନାରେ କାମ କରୁଛି । ଗୁରୁବାରୀ ଓ ଚକେଇ ନାୟକର ଘର ପାଖାପାଖି । ଦିହେଁ ଯାକ ଦି ଶ୍ରେଣୀରୁ ରହିଥିଲେ । କଣ କରନ୍ତେ ପାଠ ପଢି । ଗୁରୁବାରୀ ବାପ ନଥିଲା । ତାକୁ ବର୍ଷକବେଳେ ତାବାପ ଜଙ୍ଗଲରୁ କାଠ ହାଣୁ ହାଣୁ ସାପ କାମୁଡାରେ ମରିଗଲା । ବାପଟା ଯଦି ଥା'ନ୍ତା, ତେବେ ବି ଗୁରୁବାରୀ ପଢି ପାରି ନଥାନ୍ତା । ବାପର ପଇସା ନଥିଲା; ପଢିଥା'ନ୍ତା କେଉଁଠୁ । ସେ ବି କାଠ କାଟିଥାନ୍ତା; ଜଙ୍ଗଲ ଯାଇଥାନ୍ତା, ବାପ ସାଙ୍ଗରେ ଫ୍ୟାକ୍ଟେରୀରେ କାମ କରିଥାନ୍ତା । ବାପ ମରିଗଲାରୁ ସହଳ ସହଳ ଗୁରୁବାରୀ ବେକରେ କାମ କରିବାର ବୋଝଟା ନକିତା ବିନ୍ଧା ପରି ମାଡି ବସିଲା । ପେଟ ଚାଖଣ୍ଡକ ପାଇଁ କିଛି ଦିନ ସକାଶେ ଗାଁ ପଦ୍ମନି ମହାନ୍ତିଙ୍କ

ଘରେ ଗାଈଆଳ ହୋଇ ରହିଥିଲା । ଟିକିଏ ବୁଦ୍ଧି ହେବାରୁ ଚୌଦ୍ୱାର କାଚ ଫ୍ୟାକ୍ଟେରୀରେ କାମ କରୁଛି । ଆଜକୁ ବର୍ଷେ ହେବ । ଦିନକୁ ମଜୁରୀ ବାର ଟଙ୍କା । କାଚ ଫ୍ୟାକ୍ଟେରୀରେ ତା ଗାଁରୁ କେତେ ଟୋକା କାମ କରୁଛନ୍ତି । ଯେଉଁଦିନ କାମ ନ କରିବେ, ସେ ଦିନ ମଜୁରୀ ବନ୍ଦ । ଗୁରୁବାରୀ ଓ ଚକେଇ ସାଙ୍ଗ ହୋଇ ଯାନ୍ତି ଫ୍ୟାକ୍ଟେରୀକୁ । ଚକେଇ ମଞ୍ଚେଶ୍ୱରରେ କାମ କରେ । ବଡ ଫ୍ୟାକ୍ଟେରୀ । ମଜୁରୀ ଚଉଦ ଟଙ୍କା । କଣ୍ଟ୍ରାକ୍ଟରଟା ଦିନେ ନ ଗଲେ ଧମକେଇ କହିବ ତୋ ଚାକିରୀ ଗଲା । ଚକେଇ ଓ ଗୁରୁବାରୀ ଦି ଜଣଙ୍କର ସମଦଶା । କଣ୍ଟ୍ରାକ୍ଟର ମାନଙ୍କର ମୂଲିଆ ମାନଙ୍କ ପ୍ରତି ବ୍ୟବହାର ରାଜଧାନୀର ମଶାମାନଙ୍କ ପରି ।

ସେଦିନ ଫେରିବାବେଳେ ଚକେଇ କହିଲା, "ଆରେ ଗୁରୁବାରୀ । ଚାଲ୍, ଟିକେ ଶୈଳଶ୍ରୀବିହାର ଆଡେ ଯାଇ ବୁଲି ଆସିବା । ସେଠି ଶୁଣୁଛି କଣ ଗୋଟେ ଫ୍ୟାକ୍ଟେରୀ ହେଉଛି । ଦିନକୁ ମଜୁରୀ ପଚିଶ ଟଙ୍କା । ସରକାରୀ ଘୋଷଣା ଅନୁସାରେ ଦେଉଛନ୍ତି । ଯଦି ସେଠି ଖଣ୍ଡେ କାମ ତୋତେ ମିଳିଯାଏ... । ମୋର ତ ପ୍ରାୟ ଚାକିରୀ ସେହି ମଞ୍ଚେଶ୍ୱର କାରଖାନାରେ ହୋଇଯିବା ଉପରେ । ୟୁନିୟନ୍ ମାନଙ୍କ ସାଙ୍ଗରେ ରାଜିନାମା ହୋଇଛି । ସବୁ ଠିକା ମୂଲିଆ ଚାକିରୀ ପାଇବେ । ତୁ ଖଣ୍ଡେ ଚାକିରୀ ପାଇଗଲେ... ।"

ଗୁରୁବାରୀ ଚକେଇ ଉପରେ ଭାରି ଭରସା । ଚୌଦ୍ୱାର କଣ୍ଟ୍ରାକ୍ଟର ପାଖରେ ଏଇ କାମରେ ତାକୁ ସେ ଭର୍ତ୍ତି କରିଥିଲା । ଟୋକାଟା ଭାରି ଚାଲାକ୍ । ଦେଶ ବିଦେଶର ଖବର ତାକୁ ମାଲୁମ । ହର୍ଷଦ ମେହେଟା, ଦାଉଦ୍ ଇବ୍ରାହିମଠାରୁ ସଞ୍ଜୟ ଦତ୍ତ ଯାଏ ହିରୋ ଆଣ୍ଟି ହିରୋ ସବୁ ଖବର ତା ମନ ଡାଏରୀରେ ରହିଛି । ସେଦିନ ତ ତାକୁ ସେ ୧୯୪୨ ଲଭ୍‌ଷ୍ଟୋରିରେ ନୂଆ ହିରୋଇନ୍ କେମିତି ସେ ଗାଡି ଭିତରୁ ମୁହଁ ଉଙ୍କି ମାରୁଥିଲା ସେ କଥା କହିବାବେଳେ ହିରୋ ଅନିଲ କାପୁର ପରି ତା ଆଖି ଦିଟା ମଧ ଦିକ୍ ଦିକ୍ କରୁଥିଲା । ଚକେଇ ବୁଦ୍ଧିକୁ ତାରିଫ୍ ନକରି ରହି ପାରେନା ଗୁରୁବାରୀ ।

ଶୈଳଶ୍ରୀବିହାର ଦୂରରୁ ଦେଖିଲେ ସତେ ଲାଗୁଛି ଶୈଳପୁରୀ । ପୂର୍ବେ ଏଆଡେ ଥିଲା ଘନଜଙ୍ଗଲ । ରାତି କଥା ଦୂରେ ଥାଉ, ଦିନବେଳେ ମଧ ଲୋକେ ଆସନ୍ତି ନାହିଁ । ବାଘ, ଭାଲୁଙ୍କର ରାଜୁତି । ଥରେ ପାଖ ଡମଣା ଗାଁରୁ କେତେ ଗୁଡିଏ ସ୍ତ୍ରୀଲୋକ କାଠ ଭାଙ୍ଗିବା ପାଇଁ ଆସିବାବେଳେ, ହେଟା ବାଘଟାଏ ଚୁପ୍ ଚୁପ୍ ଆସି ଗୋଟେ ସ୍ତ୍ରୀ ଲୋକକୁ ଧରି ନେଇଥିଲା । ସେଇଦିନୁ ଏ ଆଡେ ଆସିବା ବନ୍ଦ । କେତେଟା ବରଷ ଭିତରେ କ'ଣ ଥିଲା କ'ଣ ହେଲାଣି । ପ୍ରଗତିର ଚକ ଘୁରୁଛି । ଚିମ୍‌ନିରୁ ଧୂଆଁ ବାହାରି ସାରା ଅଞ୍ଚଳକୁ ଛାଇ ହୋଇଯାଇଛି । ଆକାଶରେ ବାଦଲ ଜମି ରହିଥିବାର ଭ୍ରମ । ଜଙ୍ଗଲ ସଫା ହୋଇ କୋଠା ତିଆରି ଚାଲିଛି । କେତେ କିସମର କୋଠାଘର । ଲମ୍ବା ଧାଡିରେ ଢେର ଦୂରକୁ ଦୂରକୁ ଲମ୍ବି ଯାଇଛି । ରାଜଧାନୀରେ ଚାକିରୀ କରୁଥିବା ବାବୁମାନେ ଘର ଗୁଡିକର ମାଲିକ । ଟଙ୍କା ଅଛି ସେମାନଙ୍କ ପାଖରେ । ଋଣ ମିଳୁଛି ।

ଗୁରୁବାରୀ ଓ ଚକେଇ ଶୈଳଶ୍ରୀବିହାର ଭିତରକୁ ପଶିଗଲେ । କାହିଁ କେତେ ଘର । ଦୂରକୁ ଫ୍ୟାକ୍ଟେରୀ ଦେଖାଯାଉଛି । ଅଟକି ଗଲେ ଦିଜଣ ସେଇଠି । ଗୁରୁବାରୀକୁ ଠିଆ କରିଦେଇ

ଚକେଇ ଗେଟ୍ ସାମନାରେ ଠିଆ ହୋଇଥିବା ଦରୱାନ ସାଙ୍ଗରେ କଥା ହେଲା । ଗୁରୁବାରୀ ପାଖକୁ ଫେରି ଆସି କହିଲା, "ଶୁଣ ! ମୁଁ ଭିତରକୁ ଯାଇ ମ୍ୟାନେଜର ସାଙ୍ଗେ ଦେଖା କରୁଛି । ତୁ ସାଇକେଲକୁ ଜଗି ଏଇଠି ଠିଆ ହୋଇଥା ।"

ଭିତରକୁ ଗଲା ଚକେଇ । ଗୁରୁବାରୀ ଚାହିଁ ରହିଲା ତା ବାଟକୁ । ସତରେ କେଡେ ଭଲ ଏଇ ଚକେଇ । ତାକୁ ତ ସେ ନେଇ ବାରଙ୍ଗ କାଚକାରଖାନା କଣ୍ଟ୍ରାକ୍ଟର ପାଖରେ ରଖେଇ ଦେଇଥିଲା । ମା ଠାକୁରାଣୀ ଯଦି ଚାହାନ୍ତି ତେବେ ଏଇ ଫ୍ୟାକ୍ଟେରୀରେ ତା ଚାକିରୀ ହୋଇଗଲେ ଅଧିକା ଟଙ୍କା ମିଳନ୍ତା ।

ଦିନସାରା ଖଟି ଖଟି ଚଉଦ ଟଙ୍କା । ଚଳିବା କଷ୍ଟ । ଧନ ସାଇତିବ କେଉଁଠୁ । ଘର ଖଣ୍ଡିକ ଭାଙ୍ଗି ଗଲାଣି । ଏବର୍ଷ ଛପର ହୋଇନି । ବର୍ଷାଦିନ । ଧାରା ଶ୍ରାବଣ ବର୍ଷାରେ କାନ୍ଥ ଭୁଷୁଡି ପଡିପାରେ । ମା ବୁଢୀ ହେଲାଣି । ଆଖିକୁ ଭଲ ଦିଶୁନି । କେତେବେଳେ କେଉଁ କଥା । ଦିନକୁ ଆଉ ଅଧିକ ଦଶଟଙ୍କା ମିଳିଲେ, ତା ହାତରେ କିଛି ଟଙ୍କା ରହନ୍ତା ।

ମନେ ମନେ ଏଇ କଥା ଭାବୁଥିବା ବେଳେ ଦୂରରୁ ଦେଖିଲା ଚକେଇ ଆସୁଛି । ଖୁସିରେ ହୁଇସିଲ ମାରି ସିନେମା ଗୀତର ସୁର୍ ଧରିଛି ।

"ଚାଲ୍; କାମ ହୋଇଗଲା । ଆଗରେ ବଢିଆ ମିଠା ଦୋକାନ । ସେଇଠି ବସି ଗରମ ଗରମ ପକୁଡି, ସନ୍ଦେଶ ଖାଇ ଚା' ପିଇବା ।"

ଆଉ କିଛି କହିଲା ନାହିଁ ସେ । ଗୁରୁବାରୀ ପାଟି ପଚାରିବ ପଚାରିବ ହେଉଛି । ପଚାରି ପାରୁନାହିଁ । କାମ ହୋଇଗଲା ମାନେ କଣ ତା ଚାକିରୀ ଫ୍ୟାକ୍ଟେରୀରେ ହେଲା । ସେହି କଥାଟି ପରିଷ୍କାର କରି ଏ ଚକେଇ ନକହି ଏଆଡୁ ସେଆଡୁ କାହିଁକି ବକୁଛି ।

"ଆରେ ହୋ ଦାମାଭାଇନା । ଦେ ନା ଦୁଇଶ ଗ୍ରାମ ପକୋଡି । ଗରମ ଗରମ ଚା ଦି କପ୍ । ସ୍ପେଶାଲ ଚା । ବହୁଦିନରୁ ସ୍ପେଶାଲ ଚା ତୋ ଦୋକାନରୁ ପିଆ ହୋଇନି ।" ଚକେଇର ଦାମ ଭାଇନା ଯେମିତି ବେଶ୍ ଜଣାଶୁଣା । କାହାକୁ ଖାତିର ନାହିଁ । ବେପରୁଆଭାବ । ତା ନହୋଇଥିଲେ ସେ କଣ ମଞ୍ଚେଶ୍ୱର ଫ୍ୟାକ୍ଟେରୀ କାମ ପାଇଥାନ୍ତା ? ଗୁରୁବାରୀ ପାଇଁ ଯୋଗାଡ କରିଦେଇଥାନ୍ତା ।

ଗୁରୁବାରୀ ଚାହୁଁଥିଲା ଚକେଇକୁ । ଯାତ୍ରା ଦେଖିବା ସମୟରେ ରଜା ଆସିବା ପୂର୍ବରୁ ଆଉ ସମସ୍ତେ ଯେମିତି ଆସନ୍ତି, ଠିକ୍ ସେମିତି ଚକେଇ ଅସଲ କଥାଟା ତାକୁ ନକହି ପକୁଡି ବରାଦ କରୁଛି ।

"ଶୁଣ ଗୁରୁବାରୀ ! ତୋ ଚାକିରୀ ପକ୍କା । ଦିନକୁ ତିରିଶ ଟଙ୍କା । ସପ୍ତାହକୁ ଦିନେ ଛୁଟି । ଦିନକୁ ଆଠଘଣ୍ଟା କାମ । ସିଫ୍ଟ ତିଉଟି କରିବାକୁ ହେବ । ଏ ସପ୍ତାହରେ ଦିନରେ, ଅନ୍ୟ ସପ୍ତାହକୁ ରାତିରେ ଜଗିବା କାମ । କାମ ସେତେ କଷ୍ଟ ନୁହେଁ । ହେଲେ ହୁସିୟାର ହୋଇ ଫ୍ୟାକ୍ଟେରୀ ଦେଖାଶୁଣା କରିବାକୁ ହେବ । ଲୁହାଲଡା ଗଦା ହୋଇଛି । କାଲି ୯ଟା ବେଳକୁ ସାଙ୍ଗ ହୋଇ ଆସିବା । ମୁଁ ତୋତେ ଏଠି ଛାଡି ଦେଇ ମୋ କାମରେ ଯିବି । ଦରମା ପାଇବା ପରେ ଗୋଟେ

ଚିକେନ୍ ଖାନା ଓ ମହାରାଜା ସିନେମା ହଲ୍‌ରେ ଟିକେଟ୍ ଦେବୁ । ମନେ ରହିଲାତ ?'' କୃତଜ୍ଞତାରେ ପୂରି ଆସିଲା ଆଖି ଦିଓଟା ଗୁରୁବାରୀର । ଏତେ ଦିନ ପରେ ତା ମନ ଖୁସି । କିଛି ଟଙ୍କା ବଳିବ । ଚଳିଯିବ ଗୁଜୁରାଣ ଖୁସିରେ ।

ମା ଡାକରେ ଗୁରୁବାରୀ ଆଦୌ ବ୍ୟସ୍ତ ନହୋଇ ନିଦୁଆ ଆଖିରେ କହିଲା, ''ମୁଁ ଆଜି ସେ କାମକୁ ଯିବିନି ।'' ହଠାତ୍ ଯେମିତି ମସ୍ତବଡ ଜଳନ୍ତା ତାରାଟେ ପଡିଲା ପୃଥିବୀ ଉପରେ ଏବଂ ପୋଡିଜାଳି ଛାରଖାର କରିଦେଲା ।

''କାହିଁକି ଯିବୁନି ? ତୋତେ କଣ ବାହାର କରିଦେଲେ କି ? କାମକୁ ନଗଲେ ଆମେ ଚଳିବା କେମିତି ? ବର୍ଷାଦିନ ହେଲାଣି । ଧାରା ଶ୍ରାବଣକୁ ବର୍ଷା ଢାଳିବ । ଘର ଛପର ହୋଇନି ।'' ପୁଅ ମୁଣ୍ଡକୁ ଆଉଁଷି ଦେଇଁ ଦେଇଁ ଏତକ ତା ମା ପାଟିରୁ ବାହାରିଗଲା ।

ମା ବେକକୁ ନିଜ ହାତରେ ଭିଡି ଧରିଲା ଗୁରୁବାରୀ । ତା ମନରେ ମା କାଖରେ କାଖ ହୋଇ ତା ଥନକୁ ପାଟିରେ ଧରି ଚୁଚୁମିବା ପିଲାଦିନର ଅଭ୍ୟାସ ଉଙ୍କି ମାରୁଥିଲା । ଗରିବ ହୋଇ ଜନ୍ମ ହେଲେବି ତା ମା'ର ସେହି ସ୍ନେହବୋଳା କୋଳ ଭିତରେ ସେ ଯେପରି ସବୁ ସୁଖର ଚାବିକାଠିଟାକୁ ପାଇଥିଲା । ମା ଗାଲରେ ନିଜ ବଢି ଆସୁଥିବା ଦାଢୀକୁ ଚାପିଦେଇ କହିଲା, ''ବୁଝିଲୁ ମା । ଆମ ଦୁଃଖ ଯିବାକୁ ଆଉ ବେଶିଦିନ ଲାଗିବ ନାହିଁ । ମୁଁ ଆଉ ଗୋଟେ ଫ୍ୟାକ୍ଟେରୀରେ ନୂଆ କାମଟିଏ ଦେଖିଛି । ମାସକୁ ଦରମା ନଅଶହ ଟଙ୍କା । ଆଜିଠୁ ଯିବି । ଚକେଇ ମୋ ପାଇଁ ଏଇଟା ଯୋଗାଡ କରି ଦେଇଛି । ତୁ ଝଟ ରୋଷେଇ ବସାଇ ଦେ । ଗରମ ଗରମ ଦିଟା ଖାଇ କରି ଯିବାକୁ ହେବ । ଆଜି ତ ପ୍ରଥମ ଦିନ ।''

ଗୁରୁବାରୀର ଏଇ ପଦକ କଥା ଭିତରେ କେତେ ଅମୃତ ଭର୍ତ୍ତି ହୋଇଥିଲା । କେଜାଣି, ତା ମା ଚଟାପଟ ଉଠି ଚୁଲି ଧରାଇବାକୁ ଲାଗିଲା । କନ୍ଥାଟାରେ ମାଡି ଯାକି ହୋଇ ସକାଳୁଆ ସୁରୁସୁରୁ ଥଣ୍ଡା ପବନ ଭିତରେ ନିଜକୁ ଆବିଷ୍କାର କରିବାକୁ ଚେଷ୍ଟା କରୁଥିଲା ସେ । ଗରମ ଗରମ ଭାତ ପୁଞ୍ଜାଏ ଖାଇବାବେଳେ ତାକୁ ଲାଗିଲା ଯେମିତି ବହୁଦିନରୁ କିଛି ପାଇବାର ମନାସ କରିଥିବା ପରି ଓ ସେହି ମାନସିକ ପୂରି ଗଲାପରେ ଯେଉଁ ଆନନ୍ଦ ମିଳେ, ମା ମୁହଁରେ ସେହି ହସ ଲାଗିଥିଲା ।

ସାଇକେଲ ପେଲି ପେଲି ଶୈଳଶ୍ରୀବିହାରର ସେହି ଫ୍ୟାକ୍ଟେରୀ ନିକଟରେ ପହଞ୍ଚିଥିଲେ ଗୁରୁବାରୀ ଓ ଚକେଇ । ଗେଟ୍‌ରେ ଥିବା ଦରଓ୍ୱାନ୍ ଜାଣିବା ଲୋକକୁ ଚେନ୍‌ରେ ବନ୍ଧା ହୋଇଥିବା ପୋଷା କୁକୁର ଯେମିତି ବ୍ୟବହାର କରେ, ସେମିତି ବ୍ୟବହାର କରିଥିଲା । ଭିତରକୁ ଯିବାବେଳେ କେମିତି ଏକ ଅନୁଭବରେ ରୋମାଞ୍ଚିତ ହେଉଥିଲା ଗୁରୁବାରୀ । ତାକୁ ଦରଓ୍ୱାନ୍ କାମ କରିବାକୁ ହେବ । ସେ ଜଗିବ ଏଇ ବଡ ଫ୍ୟାକ୍ଟେରୀଟାକୁ ଯେଉଁଠି ମଣିଷ ହାଉଯାଉ ହେଉଛନ୍ତି, ବଂଚିବା ପାଇଁ ସଂଗ୍ରାମ କରୁଛନ୍ତି । ଯେଉଁଠି ଟଙ୍କା କେବଳ କଥା କହୁଛି ।

ନମସ୍କାର କଲା ମ୍ୟାନେଜରଙ୍କୁ । ତା ନାଁ ଗାଁ ଇତ୍ୟାଦି ଟିପି ରଖିଲା ମାରଓ୍ୱାଡି ମ୍ୟାନେଜର । ଟୋକା ମଣିଷ । ଗୁରୁବାରୀଠାରୁ ୨/୩ ବର୍ଷ ବଡ । ସେ ଫ୍ୟାକ୍ଟେରୀ ମାଲିକର

ଶଙ୍କା । ମାଲିକ କଲିକତାରେ ରହି ସେଇଠୁ କାରଖାନର ହାନିଲାଭ ରଖୁଛି ।

"ହେ ଟୋକା । ଶୁଣ୍ । ଏଠି ଅନେକ ମୂଲ୍ୟବାନ୍ ଲୁହା ଜିନିଷ ରହୁଛି । ଏ ଫ୍ୟାକ୍ଟେରୀର ଉତ୍ତରକୋଣକୁ ଗୋଦାମ ଘର । ତୋତେ ସେଇଠି ଡିଉଟି ଦେବାକୁ ହେବ । କାମରେ ଖିଲାପ୍ କଲେ ଚାକିରୀ ଶେଷ; ଦଣ୍ଡ ମଧ ମିଳିବ ।"

ମୁଣ୍ଡ ଟୁଙ୍ଗାରିଲା ଗୁରୁବାରୀ । ନାଲି ଲମ୍ବା ଖାତାରେ ଦସ୍ତଖତ କଲା । ଚକେଇ ସେଠାରୁ ଚାଲି ଯାଇଥିଲା ସେତେବେଳକୁ । ନୂଆ ନୂଆ ଚାକିରୀ । ନୂଆ ଅନୁଭବ । କେତେ ପ୍ରକାର ମଣିଷ । କିଏ ଫୋରମ୍ୟାନ୍, କିଏ ହେଲ୍‌ପର, କିଏ ଫିଟର୍, କିଏ ମେକାନିକ୍ । ସମସ୍ତଙ୍କର ଆତଯାତ । ଗୋଦାମ ତନଖି ରଖିବା ପାଇଁ ଷ୍ଟୋରକିପର । ଷ୍ଟୋରକିପର ଜୟପୁରରୁ ଆସିଛନ୍ତି । ମାଲିକଙ୍କ ପୁତୁରା । ଟିକିଏ ଟିକିଏ କଥାରେ ରାଗି ଉଠନ୍ତି । ଗୁରୁବାରୀକୁ ଏଇ ନୂଆ ପରିବେଶ ଯେତିକି ଅଦ୍ଭୁତ ଲାଗୁଥିଲା, ଦିନସାରା କେବଳ ବସି ବସି ବିରକ୍ତ ଲାଗୁଥିଲା । ହେଲେ କାଚ କାରଖାନା କଣ୍ଟାକ୍ଟର ପାଖରେ କୁଲି କାମ କଲାବେଳେ ଯେଉଁ ହାଡଭଙ୍ଗା ଖଟେଣି ଥିଲା, ଦେହରୁ ଗମ୍ ଗମ୍ ଝାଳ ବୋହି ଦେହକୁ ଓଦା କରି ଦେଉଥିଲା, ଏ ଫ୍ୟାକ୍ଟେରୀରେ ସେ କଥା ନଥିଲା । ଏଠି ବାବୁ ପରି ଷ୍ଟୁଲ ଉପରେ ବସି ରହୁଥିଲା । ଷ୍ଟୋର କିପର୍‌ର ଫରମାସୀ ପାଣି ଗିଲାସେ ଚା କପେ, ବା ପାନ ଦିଖଣ୍ଡ ଆଣିବାକୁ ପଡୁଥିଲା ତାକୁ । ପ୍ରଥମ ଦିନରୁ ଷ୍ଟୋର କିପ୍‌ର ଲୋକଟା ପ୍ରତି ଗୁରୁବାରୀର ଘୃଣାଭାବ ଜାତ ହୋଇଥିଲା । ଅଧା ହିନ୍ଦୀ, ଅଧା ଓଡିଆରେ ତା ସାଙ୍ଗରେ ବକର ବକର ହେଉଥିଲା ଏବଂ ଷ୍ଟୋର ବନ୍ଦ କରି ଯିବା ବେଳେ ବ୍ୟାଗ ଭିତରେ କଣ ମେଞ୍ଚେ ଭର୍ତ୍ତି କରି ସବୁଦିନେ ନେଇ ଯାଉଥିଲା ।

ଦିନେ ଗୁରୁବାରୀ ତା ଗାଳି ସହି ନ ପାରି ତାକୁ ବହେ ଗାଳି ଦେଇଥିଲା । "କିହୋ; ତୁମେ ଚାକିରୀ କରିଛ, ଆମେ ବି ଚାକିରୀ କରୁଛୁ । ତୁମେ ଆମକୁ ଗାଳି ଦେବ କାହିଁକି ?" ସାମାନ୍ୟ କଥାକୁ ନେଇ ଷ୍ଟୋର କିପ୍‌ର ଗାଳି ବିରୁଦ୍ଧରେ ସବୁ ଶ୍ରମିକମାନେ ଏକାଠି ହୋଇ ଯାଇଥିଲେ । ମ୍ୟାନେଜରର ହସ୍ତକ୍ଷେପ କରିବାରୁ ଅବସ୍ଥା ଶାନ୍ତ ହେଲା । ଏଇମିତି ଗୋଟେ ଅଧେ ଛୋଟ ଘଟଣାକୁ ଛାଡି ଦେଲେ, ଗୁରୁବାରୀକୁ ଫ୍ୟାକ୍ଟେରୀ କାମ ବେଶ୍ ଭଲ ଲାଗୁଥିଲା । ଆଠଘଣ୍ଟା ଡିଉଟିପରେ ବଦଳିଆ ଜଗୁଆଳୀ ଟୋକା ଜଗିବାକୁ ଆସୁଥିଲା । ବଦଳିଆ ଟୋକା ଷ୍ଟୋର କିପର୍ ସାଙ୍ଗେ ତାର ବଚସା ହୋଇଥିଲା । ଦିନେ ସେ ନଆସିବାରୁ ହିଁ ଗଣ୍ଡଗୋଳ ଆରମ୍ଭ ହେଲା । ଷ୍ଟୋର କିପ୍‌ର ତାକୁ ଡବଲ ଡିଉଟି କରିବାକୁ ବାଧ କରିଥିଲା । ଆଠ ଘଣ୍ଟା ବଦଳରେ ଷୋଳ ଘଣ୍ଟା । ଥରେ ଦୁଇଥର ଯେ ସେ ନ କରିଛି ନୁହେଁ । କିନ୍ତୁ ଲାର୍ ଲାର୍ ତାକୁ କାମ କରିବାକୁ କହିବାରୁ ସେ ବିରକ୍ତ ହୋଇ ଷ୍ଟୋର କିପ୍‌ରକୁ ମନା କରିବାରୁ ଷ୍ଟୋର କିପ୍‌ର ତାକୁ ଗାଳି ଫଜିତ୍ କଲା ।

ସେହି ଘଟଣାକୁ ସେ ଭୁଲି ଯାଇଥିଲା । ଅଭ୍ୟାସ ଅନୁସାରେ ଡିଉଟି କରି ଚାଲିଥିଲା । କାମ ସରିଯିବା ପରେ ଗୁରୁବାରୀ ତାର ସେଇ ଛୋଟିଆ ଘରଟିକୁ ଯେଉଁଠି ମା କୋଳରେ କନ୍ଥା ଘୋଡେଇ ହୋଇ ନିଘୋଡ ନିଦରେ ଘୁଙ୍ଗୁଡି ମାରୁଥିଲା, ସେଠାକୁ ଫେରି ଆସୁଥିଲା ।

ସାତ ତାରିଖ ଦିନ ଦରମା ବାରି । ମ୍ୟାନେଜର ଜଣ ଜଣକ ନାଁ ଡାକି ଖାତାରେ ଦସ୍ତଖତ ନେଇ ନୂଆ ଫଡ ଫଡ୍ ନୋଟ ଗଣି ଦେଉଥିଲେ । ପ୍ରଥମ କରି ଏତେ ଗୁଡାଏ ଟଙ୍କା । ଟଙ୍କାର ସ୍ପର୍ଶରେ ଗୁରୁବାରୀ ହାତ ଉଷୁମ ଲାଗୁଥିଲା । ଚକେଇ ସାଙ୍ଗରେ ଯାଇ ଗୋଟେ ଚିକେନ୍ ଝୋଳ ମହାରାଜା ହଲ୍ ପାଖରେ ଥିବା ପଞ୍ଜାବୀ ଢାବାରେ ଖାଇବାକୁ ହେବ ଏବଂ ମହାରାଜାରେ ପଡିଥିବା ସଞ୍ଜୟ ଦତ୍ତର ଖଳନାୟକ ଦେଖିବାର ପ୍ରୋଗ୍ରାମ ଠିକ୍ ହୋଇଥିଲା ସେଦିନ । ରାତିରେ ଖାଇବ ନାହିଁ ବୋଲି ମାକୁ କହି ଚକେଇ ଓ ଗୁରୁବାରୀ ବାହାରି ଯାଇଥିଲେ ମହାରାଜା ସିନେମା ହଲକୁ । ଅଗ୍ରୀମ ଚକେଇ କିଣିଥିଲା ଟିକେଟ । ହଲ୍ ଭିତରେ 'ଚୋଲି କେ ପିଛ କ୍ୟା ହେ' ସଙ୍ଗୀତର ମୂର୍ଚ୍ଛନା ଭିତରେ ଗୁରୁବାରୀ ମନରେ ବାହା ହୋଇ ସ୍ତ୍ରୀ ସୁଖ ଲାଭ କରିବାର ଲାଳସା ଉଜ୍ଜ୍ୱଳ ହୋଇ ଉଠୁଥିଲା ।

ଏକ ନୂଆ ଜୀବନର ସ୍ୱପ୍ନ, ମଣିଷ ପରି ବଞ୍ଚିବାର ଲୋଭ ଭିତରେ ଭୁଲି ଯାଇଥିଲା ଗୁରୁବାରୀ ନିଜକୁ । ଘର ଛପର କରିଥିଲା, ହାତରେ ଆସ୍ତେ ଆସ୍ତେ ଟଙ୍କାଏ ଟଙ୍କାଏ ସାଇତି ରଖିଥିଲା । ଡିଉଟିରେ ଦିନ ଓ ରାତି ଭିତରେ ତାର ସ୍ୱପ୍ନ ଯେପରି ସକାଳର ସୂର୍ଯ୍ୟକିରଣ ପାଲଟି ଯାଇଥିଲା । ସେ ନିଜର ମୂଲ୍ୟକୁ ବୁଝିବାକୁ ଚେଷ୍ଟା କରୁଥିଲା ।

ଫ୍ୟାକ୍ଟେରୀରେ ତାର ଆଦର ମଧ ବଢି ଯାଇଥିଲା । କଲିକତା ବ୍ୟବସାୟୀର ବ୍ୟବସ୍ଥା ଚକ୍ରବ୍ୟୂହ ଭିତରେ ନିରୀହ ଗୁରୁବାରୀ କଣ ବା ଜାଣନ୍ତା । ଷ୍ଟୋର କିପ୍‌ର ସହିତ ସାମାନ୍ୟ ବଚସା ଘଟଣାକୁ ସେ କେବେଠାରୁ ଭୁଲି ଯାଇଥିଲା । ସେ କେବଳ ତାର ଚାକିରୀ, ଆଠ ଘଣ୍ଟାର ପରିଶ୍ରମ, ମାର ମମତା ବୋଳା ସ୍ନେହ, ଚକେଇ ପରି ବନ୍ଧୁର ସୌହାର୍ଦ୍ଦ୍ୟକୁ ମନରେ ରଖିଥିଲା । କିନ୍ତୁ ତାର ଫଳନ୍ତି ସ୍ୱପ୍ନର ଗଛଟି ହଠାତ୍ ଯେ ଏକ ପ୍ରବଳ ଝଞ୍ଜାର ମୁକାବିଲା କରି ତଳେ ଲୋଟି ପଡିବ; ତାହାକୁ ସେ କେମିତି ଭାବିଥାନ୍ତା ।

ରାତି ଡିଉଟି ଆଠଟାବେଳେ ସାରି ନିଦୁଆ ଆଖିରେ ବାହାରକୁ ବାହାରିବାବେଳେ ପୁଲିସ୍ ଜିପ୍ ସହିତ ଫ୍ୟାକ୍ଟେରୀ ମ୍ୟାନେଜରକୁ ଦେଖି ଚମକି ପଡିଥିଲା ସେ । ସାଇକେଲ କାଢି ଆଗକୁ ବଢିବାବେଳେ ପୁଲିସ୍ ଇନିସ୍‌ପେକ୍ଟର ତା ହାତକୁ ଧରି ପକାଇ କହିଲେ, ''ହେ ଟୋକା । ରହ ଏଇଠି । ଫ୍ୟାକ୍ଟେରୀ ଖାନତଲାସ ହେବ । ଲୁହା ଚୋରୀ ହେବାର ଖବର ମିଳିଛି ।''

ବାଧ ସ୍କୁଲ ଛାତ୍ରପରି ସେ ଠିଆ ହୋଇ ରହିଲା । ନିଦରେ ଆଖିମାଡି ମାଡି ପଡୁଥିଲା । କେମିତି ହେଲା ଚୋରୀ । ସେତ ରାତିସାରା ଡିଉଟି କରିଛି । କେବେ ଶୋଇ ପଡିନି । ସବୁ ଯେପରି ତାକୁ ସ୍ୱପ୍ନ ପରି ଲାଗୁଥିଲା ।

ଲୁହା ସଟରକୁ ଟେକିଦେଲା ଷ୍ଟୋର କିପ୍‌ର । ତା ଭିତରେ ଥିବା ଥାକ ଥାକ ଲୁହା ଲଡାର ଜିନିଷ ଗୁଡିକୁ ଦେଖୁଥିଲା ଗୁରୁବାରୀ ପ୍ରଥମ କରି । କେବେ ଏତେ ଭିତରକୁ ସେ ଆସିନି । ଦୁଆର ମୁହଁରେ ଷ୍ଟୋର କିପ୍‌ର ଫରମାସୀକୁ ତୁଲେଇ ଥାଏ ।

ଦଳ ଦଳ ପୁଲିସ୍ ଖପ୍‌ଖାପ୍ ଡେଇଁ ପଡି ଏ ମୁଣ୍ଡରୁ ସେ ମୁଣ୍ଡ ଖେଦିଗଲେ । ଥାକ୍ ଥାକ୍ ଜିନିଷ ସବୁ ତନଖି କରିବାକୁ ଏତେ ଗୁଡିଏ ପୁଲିସ୍ ବେଶି ସମୟ ଲାଗିଲା ନାହିଁ । ଷ୍ଟୋରକିପ୍‌ର

ଆଗକୁ ଆସି ହଠାତ୍ କହି ପକାଇଲେ, "ଆଜ୍ଞା ! ଇସ୍ପାତର ସ୍ପ୍ରିଙ୍ଗ୍ ପ୍ୟାକେଟ୍‌ଟି ନାହିଁ । ଦାମିକିଆ ପ୍ୟାକେଟ୍ ।" ଷ୍ଟୋର କିପର ଓ ମ୍ୟାନେଜର ପରସ୍ପରକୁ ଚାହାଁଚୁହିଁ ହେଲେ । ଇନ୍‌ସପେକ୍ଟରକୁ ଫୁସ୍ ଫୁସ୍ କରି ଗୁରୁବାରୀ ଆଡକୁ ଇସାରା କଲେ ।

ହଠାତ୍ ସେହି ଇନିସ୍‌ପେକ୍ଟର ତା ହାତକୁ ଧରି ପକାଇ ଅଭଦ୍ର ଭାଷାରେ ଗାଳି ଦେବାକୁ ଆରମ୍ଭ କରି ଦେଇଥିଲା "ଶଳା, ଛଗୁଆଳୀ ହୋଇ ଚୋରୀ କରୁଛୁ । ଚାଲ୍ ଶଳା, ଥାନାରେ ଦି ଗୋଟା ଖାଇଲେ ବାଟକୁ ଆସିଯିବୁ । ବୋପା ନାଁ ମନେ ପଡିଯିବ" ଆବାକାବା ହୋଇ ଗୁରୁବାରି ଚାହିଁଲା ମ୍ୟାନେଜରଙ୍କୁ । "ଆଜ୍ଞା, ଆପଣ ମୋର ଅନ୍ନଦାତା, ମୋର ମା ବାପା । ମୁଁ କିଛି ଜାଣେନି । ମୁଁ ଚୋରୀ କରିନି । ମୁଁ କାହିଁକି ଚୋରୀ କରିବି ? ଗୋଦାମ ଚାବିକାଠି ଷ୍ଟୋର କିପରଙ୍କ ପାଖରେ । ସେ ବ୍ୟାଗରେ ପ୍ରତ୍ୟେକ ଦିନ କଣ ନେବା ଆଣିବା କରନ୍ତି । ମୁଁ କେବେ ଗୋଦାମ ଭିତରକୁ ପାଦ ବଢାଇ ନାହିଁ । ମୋର ସେହି ଇସ୍ପାତ ସ୍ପ୍ରିଙ୍ଗ କଣ ହେବ । ମୁଁ ଗରିବ ଲୋକ । ମୋତେ ହଇରାଣ କରନ୍ତୁ ନାହିଁ ।"

ତାର ସମସ୍ତ ଆକୁଳ କରୁଣ ନିବେଦନ ବ୍ୟବସାୟୀ ମ୍ୟାନେଜରର ହୃଦୟକୁ ଛୁଇଁ ନଥିଲା । ମଣାମାନଙ୍କ ରକ୍ତ ଶୋଷଣର ଅଭିନବ ଉପାୟ ସହିତ ସେମାନେ ଥିଲେ ବେଶ୍ ପରିଚିତ । ସେ ବିଦ୍ରୁପ ଗଳାରେ କହିଲା, "ଯାଃ, ଯାଃ, ଶାଳା ଭଲେଇ ହେଉଛୁ । ତୁମ ପରି ଲୋକଙ୍କୁ ଫ୍ୟାକ୍ଟେରୀରେ କାମ ଦେବାର ନଥିଲା । କାମ ଦେଇ ଭୁଲ୍ ହୋଇଗଲା । ମୋ ଲୁହାର ମୂଲ୍ୟ ତୋ ପରିକା ଲୋକଠାରୁ ଢେର ମୂଲ୍ୟବାନ ।"

ଗୁରୁବାରୀର ସମସ୍ତ ଅନୁରୋଧ, କାକୁତିମିନତି ଇନ୍‌ସପେକ୍ଟର ହୃଦୟରେ ମଧ ଦୟାଭାବ ସଞ୍ଚାର କରିପାରିନଥିଲା । ସେ ଭେଟିରେ ବନ୍ଧା । ଆଇନ୍‌କୁ ରକ୍ଷା କରିବା ତାର ଦାୟିତ୍ୱ । ଗୁରୁବାରୀର ଦୁଇହାତକୁ ଭିଡି ନେଇ ଜିପ୍ ଭିତରେ ବସାଇ ଦେଲା ।

ଗୁରୁବାରୀ ଚାହୁଁଥିଲା ମ୍ୟାନେଜର ଆଡେ । ଷ୍ଟୋର କିପରକୁ ଚାହିଁବାକୁ ତାର ଇଚ୍ଛା ହେଉ ନଥିଲା । ମନ ଭିତରେ ମ୍ୟାନେଜରର ସେହି କଠୋର ବିଦ୍ରୁପ ବାକ୍ୟ ପ୍ରତିଧ୍ୱନିସୃଷ୍ଟି କରୁଥିଲା, "ମୋ ଲୁହାର ମୂଲ୍ୟ ତୋ ପରିକା ଲୋକଠାରୁ ଢେର ବେଶି ।"

ସେ ମନରେ ଗଢିଥିଲା ଅନେକ ସ୍ୱପ୍ନ । ସେହି ସ୍ୱପ୍ନର ପାହାଡରୁ ପଥର ଖଣ୍ଡମାନ ଧଡ଼ଧାଡ଼ ହୋଇ ଖସୁଥିଲା । ଢୋ ଢୋ ଓ ଧଡ଼ଧାଡ଼ ଶବ୍ଦ ସହିତ "ମୋ ଲୁହାର ମୂଲ୍ୟ ତୋ ପରିକା ଲୋକଠାରୁ ଢେର ଅଧିକ । ବାକ୍ୟଟି ଘଡିଘଡି ଶବ୍ଦ କରି ତା କାନରେ ଖୁବ୍ ଜୋର୍‌ରେ ପିଟି ହେଉଥିଲା ।"

❋ ❋

# ଯଦୁମଣିଙ୍କ ଅନ୍ୱେଷଣ

ରେମନ୍ ସର୍କସ ଦେଖିବାକୁ ଯିବା ପୂର୍ବରୁ ସର୍ବାନନ୍ଦ କଟକ ନର୍ସିଂହୋମ ଆଡେ ଘେରେ ବୁଲି ଆସିବାକୁ ସ୍ଥିର କଲେ । ବିଶ୍ୱଜିତ୍ ସେଠାରେ ଚିକିତ୍ସା ହେଉଛି । ନର୍ସିଂହୋମର ଉପର ମହଲାକୁ ଉଠୁ ଉଠୁ ବିଶ୍ୱଜିତ୍‌ର ବଡ ପାଟିରେ କାହା ସହିତ କଥା ହେଉଥିବାର ଶୁଣିବାକୁ ପାଇଲେ ସେ । ଉପର ବାରଣ୍ଡାରେ ଏକ ଆରାମ୍ ଚୌକିରେ ଗୋଡହାତ ଲମ୍ବାଇ ବିଶ୍ୱଜିତ୍ ବସି ଗପ କରୁଛି । ହାତଗୋଡରେ ଅସଂଖ୍ୟ ଷ୍ଟିଚ୍ । ଯନ୍ତ୍ରଣାରେ ମୁହଁର ଶିରାଗୁଡିକ ଟାଣି ଟାଣି ହୋଇଯାଉଥିଲେ ମଧ୍ୟ ତାର ବନ୍ଧୁ ସଙ୍ଖୋଳିବାକାର୍ଯ୍ୟ ଚାଲୁ ରହିଥାଏ । ପିମ୍ପୁଡି ଧାଡି ଲମ୍ବିବା ପରି ବନ୍ଧୁ ମାନଙ୍କର ଧାଡି । କେହି ଜଣେ ଅଜ୍ଞାତ ଆତତାୟୀ ହଠାତ୍ ବିଶ୍ୱଜିତ୍‌କୁ ସଶସ୍ତ୍ର ଆକ୍ରମଣ କରି କ୍ଷତାକ୍ତ କରି ଦେବାର ଖବର ଦୈନିକ ଖବରକାଗଜରେ ପ୍ରକାଶିତ ହେବା ଦିନରୁ ବନ୍ଧୁମାନେ ଉଦ୍‌ବିଘ୍ନ ମନରେ ତାକୁ ଦେଖିବାକୁ ସେହି ନର୍ସିଂହୋମ୍‌କୁ ଲାଇନ୍ ଲଗାଇ ଦେଇଥାନ୍ତି ।

ବିଶ୍ୱଜିତ୍ ପରି ଏକ ବିଖ୍ୟାତ୍ ମଣିଷକୁ କାହିଁକି ଯେ ଏପରି ଆକ୍ରମଣ କରାଗଲା, ସେ ବିଷୟରେ ନାନାପ୍ରକାର କଳ୍ପନା ଜଳ୍ପନା ପ୍ରତ୍ୟେକ ଦିନ ଖବର କାଗଜରେ ପ୍ରକାଶିତ ହେଉଥାଏ । ଘଟଣାଟି ହାଠତ୍ ଘଟିଥାଏ । ଅଫିସ୍ ଦୁଆର ମୁହଁରେ ସ୍କୁଟରଟିକୁ ରଖିବାବେଳେ ହଠାତ୍ ଦିଜଣ ଟୋକା ହିରୋହୁଣ୍ଡା ଚଢି ବିଶ୍ୱଜିତ୍ ରଖୁଥିବା ଗାଡି ପାଖରେ ପହଞ୍ଚି ଯାଇଥିଲେ । ପଛରେ ବସିଥିବା ହୃଷ୍ଟପୁଷ୍ଟ ଟୋକାଟି ହଠାତ୍ ତା ଆଡକୁ ମାଡିଯାଇ ପଛପଟୁ ଏକ ଭୁଜାଲି ବାହାର କରି ଆକ୍ରମଣ ଚଳାଉଥାଏ । ସ୍କୁଟରଟି ତଳେ ପଡିଯାଇଥାଏ । ବିଶ୍ୱଜିତ୍ ମୁଣ୍ଡକୁ ଲକ୍ଷ୍ୟ କରି ଭୁଜାଲୀ ମାରିବାବେଳେ ବିଶ୍ୱଜିତର ହାତ ଭୁଜାଲୀକୁ ଅଟାକାଇବାକୁ ଯାଇ ତାର କହୁଣୀ ତଳେ ବାଜେ ।

ହଠାତ୍ କ'ଣ ଏପରି ଘଟିଗଲା, ସେ କିଛି ବୁଝିବା ପୂର୍ବରୁ ସେ ଯୁବକ ସିନେମାର ଖଳନାୟକ ନାୟକକୁ ଆକ୍ରମଣ କରିବା ପରି ବାରମ୍ବାର ଆଘାତ କରି ଚାଲିଥାଏ । ତଳେ ପଡ଼ିଯାଇଥାଏ ବିଶ୍ୱଜିତ୍ । ଛୁରାଭୀର ଧାର ତାର ଆଣ୍ଠୁ ଗଣ୍ଠି, ଗୋଡ ହାତ, ସବୁଠି ବାଜି ରକ୍ତଧାର ଛୁଟାଇ ଦେଇଥାଏ । ତଥାପି ନିଜକୁ ରକ୍ଷା କରିବାପାଇଁ ବିଶ୍ୱଜିତ୍ ନିଜ ଚେଷ୍ଟା ରଖିଥାଏ । ଲୋକମାନେ ସେଠାରେ ଜମାହୋଇ କେବଳ 'ହାଁ', 'ହାଁ' କରୁଥାନ୍ତି । ଭରସି କରି ପଶିଯାଇ ସେହି ଯୁବକକୁ କାବୁ କରିବାକୁ କାହାର ସାହସ କୁଳାଉ ନଥାଏ । କିଏ ବା କାହିଁକି ଅକାରଣରେ ନିଜ ମୁଣ୍ଡକୁ ବିପଦ ଟାଣିବ, ଏହା ପରସ୍ପରରେ ମନେ ମନେ ଭାବୁଥାନ୍ତି । କଟକ ସହରରେ ହଣାକଟା ଏକ ନିତିଦିନିଆଁ ବ୍ୟାପାର ହୋଇଗଲାଣି । କେହି ଭଦ୍ରଲୋକ ସାହସ ଦେଖେଇ ପଶିବା ଅର୍ଥ ନିଜ ଉପରକୁ ବିପଦକୁ ଟାଣି ଆଣିବା । ପୁଲିସ୍ ମିଛରେ ବାରମ୍ବାର ଥାନାକୁ ଡାକିବେ । ଗୁଣ୍ଡାମାନେ ଶତ୍ରୁତା କରିବେ । ଏଇ କାରଣରୁ ମାନବିକ୍ ମୂଲ୍ୟବୋଧକୁ କେବଳ ହୃଦୟ ଭିତରେ ନିବୁଜ ରଖି, ଉପରେ ହାଁ ହାଁ କରୁଥାନ୍ତି ଦେଖଣାହାରୀ । ନିରୀହ ମୃଗ ଶାବକକୁ ସିଂହ ମାଡିବସି ତା ଦାନ୍ତରେ କ୍ଷତ ଉପରେ କ୍ଷତ କରି ଚାଲିଥାଏ ।

ରକ୍ତରେ ଜୁଡୁବୁଡୁ ବିଶ୍ୱଜିତ୍ ମରିଗଲା ବୋଲି ସ୍ଥିର କରି ହିରୋହୁଣ୍ଡାରେ ସେହି ଟୋକାଦ୍ୱୟ ଚମ୍ପଟ ମାରି ସାରିଥାନ୍ତି । ବିଶ୍ୱଜିତ୍ ଦେହରୁ ବହି ଚାଲିଥିବା ରକ୍ତର ଧାର କଟକ ସହରର ନର୍ଦ୍ଦମା ପାଣିରେ ମିଶିଯାଇ ରକ୍ତ ନଦୀର ଭ୍ରମ ସୃଷ୍ଟି କରୁଥାଏ । ଉଠିବାର ଯୁ ନଥାଏ ବିଶ୍ୱଜିତ୍‌ର ।

ଅଫିସ୍ ସମୟରେ ଏପରି ଅଘଟଣ ଘଟିବ ବୋଲି କାହାର ଭାବନା ଭିତରେ ନଥିଲା । ଗତକାଲି ତାର ବନ୍ଧୁମାନଙ୍କ ସହିତ ଅଫିସ୍‌ରେ କିଛି ଯୁକ୍ତିତର୍କ ହୋଇଥିଲା । କିନ୍ତୁ ତାହା ଏ ରୂପଧରିବ, ସେ କଳ୍ପନା କରି ପାରି ନଥିଲା । ସେ ଜାଣିଥିଲା ସାମୟିକ ଭାବରେ ତାର ଅଫିସ୍ ବନ୍ଧୁମାନେ ତା ଉପରେ ବିରକ୍ତ ହେଲେ ମଧ ତାକୁ ସେମାନେ ଯଥେଷ୍ଟ ସମ୍ମାନ ଓ ଶ୍ରଦ୍ଧା କରନ୍ତି । ବିଶ୍ୱଜିତ୍ ପରି ଟ୍ୟାଲେଣ୍ଟ ପିଲା କୋଟିଏରେ ଗୋଟିଏ ମିଳିବେ । ସେ କଲେଜରେ ପଢୁଥିବାବେଳେ କେବଳ କଲେଜ ୟୁନିୟନ୍‌ର ପ୍ରେସିଡେଣ୍ଟ ନଥିଲା ବରଂ ସମସ୍ତ ସାମାଜିକ କାର୍ଯ୍ୟରେ ତାର ଯୋଗଦାନ ଥିଲା ଅମାପ । ସେ ଗଢିଥିବା ଡ୍ରାମାଟିକ୍ କ୍ଲବ ସମଗ୍ର ଓଡିଶାରେ ହଇଚଇ ପକାଇ ଦେଇଥିଲା । ଛାତ୍ର ଜୀବନରୁ ଡ୍ରାମା ପ୍ରତି ତାର ଏକାନ୍ତ ଆକର୍ଷଣ ତାକୁ ବଡ ଦିନେ ମଧ ଡ୍ରାମା କରିବାରେ ପ୍ରେରଣା ଯୋଗାଇଥିଲା ।

ବିଜୁ ପ୍ରସାଦ ସାହସ ସଞ୍ଚୟ କରି ବିଶ୍ୱଜିତ୍‌କୁ ତଳୁ ଉଠାଇଲା । ଏବେବି ତାର ନାଡି ଚାଲୁଛି । 'ନାଁ, ବିଶ୍ୱଜିତ୍ ମରିନି ।' ତାକୁ ବହୁକଷ୍ଟରେ ଡାକ୍ତରଖାନାରେ ପହଞ୍ଚାଇ ଔଷଧ ଦେବାର ବ୍ୟବସ୍ଥା କରାଗଲା । ସେତେବେଳକୁ ସେ ଘଟଣା ଆଖପାଖରେ ଥିବା ସବୁ ଅଫିସ୍‌ରେ ପହଞ୍ଚି ସାରିଥିଲା । ଦଳଦଳ ହୋଇ କର୍ମଚାରୀମାନେ ବିଶ୍ୱଜିତ୍ ଅଫିସ୍ ସାମ୍ନାରେ ରୁଣ୍ଡ ହେବାକୁ ଲାଗିଥିଲେ । ତାଙ୍କର ଜଣେ ସହକର୍ମୀଙ୍କର ଏପରି ଦୁର୍ଦ୍ଦଶା ସେମାନଙ୍କୁ ଗଭୀର ଭାବରେ ମର୍ମାହତ କରିଥିଲା । ରାଜ୍ୟର ଶାସନ ବ୍ୟବସ୍ଥା କିପରି ଭୁଷୁଡି ପଡିଲାଣି ଏବଂ ଦିନ ଦିପହରେ ଏକ ଜନାକୀର୍ଣ୍ଣ

ସହରାଞ୍ଚଳରେ ଲୋକମାନଙ୍କ ଉପରେ ଆକ୍ରମଣ ହେଉଛି ଏହା ସାଧାରଣ ନାଗରିକର ସହ୍ୟକରିବା ସୀମା ବାହାରେ ଥିଲା । ପୁଲିସର ନିଷ୍କ୍ରିୟତା ସେମାନଙ୍କୁ ଆହୁରି ବିରକ୍ତବୋଧ ହେଉଥିଲା । ବିଭୁପ୍ରସାଦ ବିଶ୍ୱଜିତ୍‌କୁ ହସପିଟାଲରେ ଆଡିମିଶନ୍ କରି ଅଫିସ ପାଖକୁ ସେତେବେଳକୁ ଫେରି ଆସିଥିଲା । ସର୍ବାନନ୍ଦ ଭୁବନେଶ୍ୱରରେ ନାହାନ୍ତି । ସେ ଗତ ଦୁଇ ଦିନ ହେଲା କାର୍ଯ୍ୟ ଉପଲକ୍ଷେ କଲିକତା ଯାଇଛନ୍ତି । ସର୍ବାନନ୍ଦଙ୍କ ଅନୁପସ୍ଥିତିରେ ସେ କିପରି ନିଷ୍ପତ୍ତି ନେବ ତାହା ଥିଲା ତାର ଚିନ୍ତାର ବିଷୟ । ସେତେବେଳକୁ ଉପସ୍ଥିତ କର୍ମଚାରୀମାନେ ଅଫିସ୍ ସାମ୍ନାରେ ରୁଣ୍ଡ ହୋଇ ସ୍ଲୋଗାନ୍ ଦେବାକୁ ଆରମ୍ଭ କରି ଦେଇଥିଲେ । ସେମାନଙ୍କର ସ୍ଲୋଗାନ ଓ ରାସ୍ତାରେ ଯାଉଥିବା ଲୋକମାନେ ମିଳିତ ପାଟିତୁଣ୍ଡ ସେ ଅଞ୍ଚଳଟିକୁ ଏକ ସାପ୍ତାହିକ ଗାଁ ହାଟରେ  ପରିଣତ କରିଥିଲା ।

କାନରୁ କାନ ହୋଇ ଏହି ଖବରଟି ସହର ସାରା ବ୍ୟାପୀ ଯାଇଥିଲା । ସହରରେ ଶାନ୍ତିଭଙ୍ଗର ଆଶଙ୍କା କରି ପୁଲିସ୍ ଏସ୍.ପି. ଏକ ସଶସ୍ତ୍ର ପ୍ଲାଟୁନ୍ ସେଠାରେ ରଖିବାକୁ ନିର୍ଦ୍ଦେଶ ଦେଇଥିଲେ । ଏବଂ ଯଦି ସେପରି ଘଟଣା ଘଟେ, ତେବେ ତୁରନ୍ତ ଆସାମୀ ମାନଙ୍କୁ ଧରିବାକୁ ନିର୍ଦ୍ଦେଶ ଦେଇଥିଲେ । ପୁଣିଥରେ ସେପରି ଘଟିବ ବୋଲି କାହାରି ବିଶ୍ୱାସ ନଥିଲା ।

ବିଭୁପ୍ରସାଦ ଠିଆ ହୋଇ ଭାଷଣ ଦେଲା, "ବନ୍ଧୁଗଣ ! ଆଜି ଯେପରି ଭାବରେ ବିଶ୍ୱଜିତ୍ ଉପରେ ଆକ୍ରମଣ ହେଲା, ତାହା ଅତ୍ୟନ୍ତ ନିନ୍ଦନୀୟ । ଅଫିସ୍ କର୍ମଚାରୀଙ୍କୁ ସୁରକ୍ଷା ଦେବା ଅଫିସ କର୍ତ୍ତୃପକ୍ଷଙ୍କର କର୍ତ୍ତବ୍ୟ । ନାଗରିକ ମାନଙ୍କର ସୁରକ୍ଷା  କରିବା ପୁଲିସର ଦାୟିତ୍ୱ । ଏଠାରେ ଉଭୟ ଅଫିସ କର୍ତ୍ତୃପକ୍ଷ ଓ ପୁଲିସ ସେମାନଙ୍କର କର୍ତ୍ତବ୍ୟରେ ଅବହେଳା କରିଛନ୍ତି । ଏହା ବିରୁଦ୍ଧରେ ଜନମତ ଜାଗ୍ରତ କରିବାପାଇଁ ଆମର ଆଜିର ଏହି ବିକ୍ଷୋଭ । ବିଶ୍ୱଜିତ୍ କେବଳ ଆମର ବନ୍ଧୁ ନୁହେଁ, ଜଣେ ପ୍ରସିଦ୍ଧ ନାଟ୍ୟକାର ଭାବରେ ତାଙ୍କର ଯଥେଷ୍ଟ ସମ୍ମାନ ଅଛି । ତାଙ୍କ ପରି ଜଣେ ପ୍ରତିଭା ସମ୍ପନ୍ନ ନାଗରିକଙ୍କର ସୁରକ୍ଷା ନ କରି ପାରିଥିବା ହେତୁ ପୁଲିସ୍ ଡିପାର୍ଟମେଣ୍ଟ ଲଜ୍ଜିତ୍ ହେବା ଉଚିତ୍ ।"

ବିକ୍ଷୋଭକାରୀମାନେ ସମସ୍ୱରରେ କହିଉଠିଲେ, 'ସେମ୍', 'ସେମ୍' । ଗୋଟିଏ ଦୁଇଟି ଖବର କାଗଜ ପ୍ରତିନିଧି ବିକ୍ଷୋଭର ଫଟୋ ଓ ସମ୍ବାଦ ସଂଗ୍ରହ କରିସାରିଥିଲେ । ବିକ୍ଷୋଭ କାରୀ କର୍ମଚାରୀମାନେ ଯଥାସ୍ଥାନକୁ  ଫେରି ଯାଇଥିଲେ । ବିଭୁପ୍ରସାଦ ଏପରି ଜ୍ୱାଳାମୟୀ ଭାଷଣ ଦେଇଥିବା ଯୋଗୁଁ ମନେ ମନେ ଆତ୍ମସନ୍ତୋଷ ଲାଭ କରୁଥିଲେ ।

ସର୍ବାନନ୍ଦ ହାତରେ ଧରିଥିବା ଫଳତକ ବିଶ୍ୱଜିତ୍‌ଙ୍କ ଖଟଉପରେ ଥୋଇଦେଇ ତାଙ୍କ ପାଖରେ ଏକ ଚୌକୀରେ ବସି ପଡିଲେ । ସେ ହଠାତ୍ ଏପରି ଘଟଣା ଘଟିଗଲା ଓ ତାଙ୍କର ସେ ସମୟରେ ଅନୁପସ୍ଥିତି ପାଇଁ ଦୁଃଖ ପ୍ରକାଶ କଲେ । କିପରି ଓ କାହିଁକି ଏପରି ଘଟଣା ଘଟିଲା ତାହା ଜାଣିବା ତାଙ୍କର ଇଚ୍ଛା ଥିଲା ।

ସର୍ବାନନ୍ଦଙ୍କ ଆଗମନ ବିଶ୍ୱଜିତ୍‌ଙ୍କ ମନରେ ସାହସ ଓ ଆନନ୍ଦ ଦେଇଥିଲା । ସେ

ତାକୁ ଲକ୍ଷ୍ୟ କରି କହିଲ, "ସାର; ବର୍ତ୍ତମାନ ମୋ ଦେହ ଟିକିଏ ଭଲ । ଏଇ ଦେଖୁନାହାନ୍ତି ହାତ ଓ ଗୋଡରେ କେତେ ଷ୍ଟିଚ୍ ପଡିଛି । ମରୁ ମରୁ ବଞ୍ଚିଗଲି ସାର୍ । ମୋର କେହି ଶତ୍ରୁଅଛନ୍ତି ବୋଲି ମୁଁ ନିଜେ ବିଶ୍ୱାସ କରି ପାରୁନାହିଁ । ଦେହର ଏ ଯନ୍ତ୍ରଣା ସହିତ ପୁଲିସ୍‌ର ଯନ୍ତ୍ରଣା ବଢି ଚାଲିଛି । ସେମାନେ ମୋର ପିଛା ଛାଡୁନାହାନ୍ତି । ମୋତେ ବାରମ୍ବାର ତାଗିଦ୍ କରି ପଚାରିବାରେ ଲାଗିଛନ୍ତି ମୋର କେହି ଶତୃଅଛନ୍ତି କି ? ପ୍ରେମ ବ୍ୟାପାରରେ ମୋର କାହା ସହିତ ପ୍ରତିଦ୍ୱନ୍ଦିତା ଅଛି କି ? ଆପଣ ତ ମୋତେ ଭଲକରି ଜାଣିଛନ୍ତି । ସେଠି ଯଦି ମୁଁ ଡକାପକାଇ ପ୍ରେମ କରି ପାରିଲି, ତେବେ ଏଠି ଲୁଚାଇବାରେ କଣ ଥାଇପାରେ ? ନାଟକରେ କାମ କଲାବେଳେ କେତେ ଲୋକ ହିରୋ ହିରୋଇନ୍ ହେବା ପାଇଁ ଲାଇନ୍ ମାରୁଛନ୍ତି । ସମସ୍ତେ ତ ହିରୋ ହିରୋଇନ୍ ହୋଇ ପାରିବେ ନି । ତେଣୁ କାହାକୁ କାହାକୁ ରୋଲ୍ ଦେବାକୁ ବେଳେ ବେଳେ ହୁଏତ ମୁଁ ମନା କରିଦେଇଥିବି । ତା ଅର୍ଥ ନୁହେଁ ସେ ମୋ ସହିତ ଶତୃତା କରିବେ । ହୁଏତ କିଛିଟା ପ୍ରଫେସନାଲ ଜେଲସି ଥାଇପାରେ । କିନ୍ତୁ ମୁଁ କେମିତି ଜାଣିବି ? କିନ୍ତୁ ପୁଲିସ୍ ବାଲାଏ ମୋ ପିଛା ଛାଡୁନାହାନ୍ତି ।"

ଏତିକି କହି ଆଉ କଣ କହିବାକୁ ଯାଉଛି, ତାର ଦଳେ ସାଙ୍ଗ ତଳୁ ବଡ ପାଟିରେ ଚିତ୍କାର କରି ଉପର ବାରଣ୍ଡାକୁ ଚାଲି ଆସିଲେ । ସେ ସର୍ବାନନ୍ଦଙ୍କୁ ଛାଡି ସେମାନଙ୍କ ପାଖକୁ ଯାଇ ଉପର ବାରଣ୍ଡାରେ ଥିବା ପାରାପେଟ୍ ଉପରେ ସିନେମାର ହିରୋଷ୍ଟାଇଲରେ ବସି କିପରି ଘଟଣାଟି ଘଟିଲା, ତାହା ବର୍ଣ୍ଣନା କରିବାକୁ ଲାଗିଲା । ତାର ପ୍ରଶଂସକ ତରୁଣୀମାନେ ତାକୁ ବେଢିଯାଇ ତା କଥାକୁ ଶୁଣୁଥିଲେ ।

ସର୍ବାନନ୍ଦ ଛିଡା ହେଲେ । ବିଶ୍ୱଜିତ୍ ପାଖରେ ପହଞ୍ଚି ତା କାନ୍ଧରେ ହାତ ପକାଇ ପରେ ପୁଣି ଆସିବେ ବୋଲି କହି ବିଦାୟ ନେଲେ । ବିଶ୍ୱଜିତ୍ ଟା ଗପପେଡି ଖୋଲି ଦେଇ ସେଥିରେ ମଜ୍ଜିଯାଇଥାଏ ।

ପୁଲିସ୍ ବିଭିନ୍ନଭାବରେ ଅନୁସନ୍ଧାନ କରି ସେମାନଙ୍କର ରିପୋର୍ଟ ମୁଖ୍ୟ ପୁଲିସ୍ ଅଧିକାରୀ ଓ ଜିଲ୍ଲା ପ୍ରଶାସକଙ୍କ ନିକଟରେ ଦାଖଲ କରି ସାରିଥାଏ । ବିଶ୍ୱଜିତ୍‌କୁ ହତ୍ୟା କରିବା ଉଦ୍ୟମରେ କାହାକୁ ଗରିଫ୍ କରାଯାଇ ପାରି ନଥାଏ । ଏ ହତ୍ୟା ଉଦ୍ୟମ କେଉଁ କାରଣରୁ ଘଟିଛି ଏବଂ ସେଥି ସହ ସାମ୍ପ୍ରଦାୟିକ ସଂଘର୍ଷ ହେବାର କୌଣସି ସୂତ୍ର ରହିଛି କି ନାହିଁ, ତାହା ଜାଣିବାରେ ପୁଲିସ ସଫଳ ହୋଇ ପାରି ନଥାଏ ।

ବିଭୁପ୍ରସାଦ ମନେ ମନେ ସର୍ବାନନ୍ଦଙ୍କ ଉପରକୁ ବିରକ୍ତ ହୋଇ ଯାଇଥାଏ । ଘଟଣାଟିରୁ ଏକ ରାଜନୈତିକ ଫାଇଦା ପାଇବା ପାଇଁ ସର୍ବାନନ୍ଦ ଚେଷ୍ଟା ନ କରିବା ଉଚିତ ହୋଇ ନାହିଁ ବୋଲି ସେ ଭାବୁଥାଏ । ସର୍ବାନନ୍ଦ କିନ୍ତୁ ଘଟଣାଟିକୁ ବିଭିନ୍ନ ଦିଗରୁ ବିଚାର କରୁଥାନ୍ତି । ବିଶ୍ୱଜିତ୍ ତାଙ୍କ ପାଇଁ ନୂଆ ନୁହଁନ୍ତି । ଦୀର୍ଘ ଦଶବର୍ଷ ଭିତରେ ସେ ବିଶ୍ୱଜିତ୍‌କୁ ଭଲଭାବରେ ଜାଣିଛନ୍ତି ଏବଂ ବିଶ୍ୱଜିତ୍ ପରି ଏକ ଅବାଗିଆ ମଣିଷକୁ ବାଟରେ ପକାଇବା ସହଜ ନୁହେଁ ବୋଲି ସେ ଉପଲବ୍ଧି କରିଛନ୍ତି ।

ଜିଲା ପଡିଆରେ ଜେମନ୍ ସର୍କସ ଦେଖିବାକୁ ପ୍ରବଳ ଭିଡ । ଲୋକମାନେ ଧାଡିବାନ୍ଧି ଟିକେଟ୍ ନେବାରେ ବ୍ୟସ୍ତ ।

ସର୍କସ ଆରମ୍ଭ ହୋଇ ଯାଇଛି । ସର୍ବାନନ୍ଦ ଟଙ୍କାକିଣା ଗ୍ୟାଲେରୀରେ ବସି ସର୍କସ ଦେଖିବାବେଳେ ତାଙ୍କ ଆଗରେ ହଠାତ୍ ସେହି ଜୋକରଟିର ମୁହଁ ଦେଖା ଯାଉଛି । ଜୋକର ପଡି ଉଠି ଆଣ୍ଠୁଗଣ୍ଠି ଛିଡାଇ, ପୁଣି ଦର୍ଶକ ମାନଙ୍କ ଆଗରେ ଛିଡା ହୋଇ ତାର ସେହି ବିଚିତ୍ରବର୍ଣ୍ଣ ମୁହଁଟିକୁ ଦେଖେଇ ହେହେ ହୋଇ ହସୁଛି । ସର୍ବାନନ୍ଦଙ୍କ ମନରେ ନୂଆବର୍ଷରେ ଟି.ଭି.ରେ ଦେଖିଥିବା ଦୃଶ୍ୟ ଦେଖାଯାଉଛି । ହସି ହସି ଯଦୁମଣି ମଙ୍ଗରାଜ କହୁଛନ୍ତି, "ମୁଁ ସ୍ୱର୍ଗଲୋକରୁ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛି । ନୂଆବର୍ଷ ଦେଖୁଛି, ଶାସନ କିପରି ଚାଲୁଛି, ପୁଲିସ କଣ କରୁଛି, ଦୁର୍ନୀତି କେତେ ବ୍ୟାପିଛି, ବଜାର ଦର କେତେ ବଢିଛି, ଶିକ୍ଷା କେତେ କମିଛି, ନୈତିକତା କେତେ ହଜିଛି, ତାହା ବୁଲି ବୁଲି ଦେଖୁଛି । ମୁଁ ଯଦୁମଣି ମର୍ତ୍ତ୍ୟ ଲୋକରେ ରହିବାକୁ ସ୍ଥାନ ଖୋଜୁଛି ।"

ପାଖରେ ବସିଥିବା ବିଭୁପ୍ରସାଦକୁ ଚାହିଁଲେ ସର୍ବାନନ୍ଦ । ହଲେଇଦେଲେ ଟିକିଏ । ଜୋକରଟା ଦୋଳିମାଷ୍ଟର ପିଚାରେ ଦିପାହାର କଷି ଦେଉଥାଏ । "ଦେଖୁଛ ବିଭୁପ୍ରସାଦ ! ଏ ଜୋକରକୁ । ସେ କଣ କରୁଛି ତାକୁ ବୁଝିବାକୁ ଚେଷ୍ଟା କରିଛ ?" ମୁଣ୍ଡ ହଲାଇ ମନାକଲା ବିଭୁପ୍ରସାଦ ।

"ଭଲ କରି ପୁଣି ଦେଖ ଓ ତାକୁ ବୁଝିବାକୁ ଚେଷ୍ଟା କର ।" ସର୍ବାନନ୍ଦ କହିଲେ ।

"ହଁ, ଏବେ ମୋତେ ବୁଝାପଡୁଛି । ସର୍କସରେ ଦେଖା ଦେଉଥିବା ବିଭିନ୍ନ ଚରିତ୍ର ମାନଙ୍କ ଆଡକୁ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିବା କାର୍ଯ୍ୟରେ ସେ ଲିପ୍ତ ।"

"ବାସ୍, ଠିକ୍ ବୁଝିଛ ତୁମେ । ସର୍କସର ଏହି ଜୋକର ଓ ସଂସାରର ଲୋକମାନଙ୍କ ଭିତରେ ପ୍ରଭେଦ କେଉଁଠି । ସେ ସର୍କସ ଭିତରେ ବଣ୍ୟଜନ୍ତୁ ମେଳରେ କାମକଲାବେଳେ, ସଂସାର ଭିତରେ ଥିବା ଲୋକମାନେ ପୁରା ସଂସାରରେ ରହି କାର୍ଯ୍ୟ କରୁଛନ୍ତି । ତୁମେ, ମୁଁ ଓ ବିଶ୍ୱଜିତ୍ ଆମେ ଏହି ସଂସାରର ଲୋକତ ।"

ବିଭୁପ୍ରସାଦ ସର୍ବାନନ୍ଦଙ୍କ ମୁହଁକୁ ଆବାକାବା ପରି ଅନାଇଲା । ତାଙ୍କର ଦାର୍ଶନିକ ସୁଲଭ ମତକୁ ଭାବିବା ଉଚିତ ବୋଲି ସେ ଭାବୁଥିଲା । ବିଶ୍ୱଜିତ୍‌ର ଘଟଣା ସହିତ ସର୍କସ ଜୋକରର କି ସମ୍ପର୍କ ଥାଇପାରେ, ତାହାକୁ ଅନୁଧ୍ୟାନ କରିବାର ଖୋରାକ ତାକୁ ମିଳିଯାଇଥିଲା ।

ସେତେବେଳକୁ ଦର୍ଶକମାନଙ୍କ ନିକଟରୁ ଜୋକର୍‌ଟି ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ।



# ଦେବୀ ଶ୍ରାବଣୀ

ସାବି ବେଉଆ ପଦାକୁ ଚାହିଁଲା । ନଈବନ୍ଧ ଉପରେ ରହିବା ଆଜକୁ ଦଶଦିନ ହେଲାଣି । ଆଉ କେତେଦିନ ରହିବାକୁ ହେବ କିଏ ଜାଣେ ? ନିଆଣ୍ଡ୍ରୀ ବୁଢୀ ଭଗବାନଙ୍କୁ ଆଶ୍ରାକରି ପଡିଛି । ବର୍ଷାଅନବରତ ଟପ୍ ଟପ୍ ହେଉଛି । ଛୋଟ ଜରିପାଲ ଟଣା ହୋଇ ମୁଣ୍ଡ ଗୁଞ୍ଜିବାକୁ ଥାନଟିଏ କରିନେଇଛି । ଗାଁ ଟୋକା ମହନି ପଲାଉର ନଈ ପାଣି ପଶିଆସିବା ମାତ୍ରେ ତା ପାଇଁ ଏଇ ଜରିଖଣ୍ଡିକ ଆଣି ଭଙ୍ଗାବନ୍ଧ ଉପରେ କିଳାମାରି ବାନ୍ଧି ଦେଇଯାଇଛି ।

କିଏ ଜାଣିଥିଲା ନଈପାଣି ଏଇମିତି ପଶିଆସିବ ହଠାତ୍ ! ସାବି ବେଉଆ ବୁଢୀ ହେଲାଣି । ବାଳ ପାଚିଗଲାଣି । ନଈ ଆରପାରିରେ ତା ବାପଘର । ପଞ୍ଚାବନ ମସିହାରେ ମହାନଦୀ ତଳପଟିରେ ଘାଇ ହୋଇ ଭୟଙ୍କର ବନ୍ୟା ହୋଇଥିବା କଥା ସେ ଶୁଣିଥିଲା । ତାଙ୍କ ଗାଁରେ ବନ୍ୟା କେବେ ଏତେ ଅସମ୍ଭବ ଭାବେ ହୋଇନାହିଁ । କିନ୍ତୁ ହଠାତ୍ ଏଇ ବନ୍ୟା ! ଧାରା ଶିରାବଣ ଏଇ କାଲିଠୁ ଆରମ୍ଭ । ହେଲେ ଆଷାଢ ମାସରେ ଢେର ମେଘ ଗାଜିଦେଇଛି । ନାଳ,ଖାଲ, ଖମା ପୂରିଯାଇଛି ପାଣିରେ । ସବୁବର୍ଷ ଏଇମିତି ବର୍ଷା ହୁଏ । ଧାରା ଶ୍ରାବଣରେ ଗଦାଗଦା ହୋଇ ମେଘ ପଡେ ।

ସାବି କେତେ ଭଲ ପାଉଥିଲା ଏଇ ଶ୍ରାବଣକୁ ପିଲାଦିନେ । ସେତେବେଳେ ନହନହକା ବୟସ । ମନରେ କେତେ ଆଶା । ଏଇମିତି ଏକ ବର୍ଷଣ ମୁଖର ଶ୍ରାବଣ ସନ୍ଧ୍ୟାରେ, ଗାଁର ସେହି ମାଟି ଚାଳଛପର ଘରେ, ତାର ଭେଟ ହୋଇଥିଲା ପଦନ ପଲାଉର ସହିତ । ପଦନା ଟୋକା । ବେଳେବେଳେ ତାଙ୍କ ଘରକୁ ଆସେ । ତା ବାବା ଓ ବୋଉ ସାଙ୍ଗରେ କଥା ହୁଏ । ବାବା ସାଙ୍ଗରେ

ଘର ଛାଇଲାବେଳେ ଟଳିଆକାମ କରେ । ସେଦିନ ବାବାକୁ ତା ପରଦିନ ତାଙ୍କ ଗାଁରେ ସରକାରୀ ଘର ନଡାଛପର ହେବା ପାଇଁ ଖବର ଦେବାକୁ ଆସିଥାଏ । କବାଟଖୋଲି ଦୁଆର ମୁହଁରେ ଧାର । ଶ୍ରାବଣର ଟପ୍‌ଟାପ୍ ବର୍ଷାକୁ ଚାତକ ପକ୍ଷୀ ଚାହିଁବା ପରି ଚାହିଁ ବସିଥାଏ ସାବି । ମନ ସିନା ଶ୍ରାବଣକୁ ଝୁରି ହେଉଥାଏ, କିନ୍ତୁ ଦେହଟା ଲାଗୁଥାଏ ଅବଶ । ଗରିବ କୁଡିଆରେ ଘଷିଫଡାଏ ବା ସାଉଁଟି ଆଣିଥିବା ଅମରି ଡାଙ୍ଗର ଶୁଖିଲା କେରାଏ ସାଇତା ହୋଇନଥିବାରୁ ପଖାଳ ତୋରାଣି ମୁନ୍ଦାକ ପେଟରେ ପଡିଥାଏ । ବାବା ବୋଉ ଦୂର ଗାଁକୁ କାମ କରିବାକୁ ଯାଇ ସେଇଠି ଅଟକି ଯାଇଥାନ୍ତି । ଝରଝର ଅନବରତ ବରଷା ପାଣି ଭିତରେ କେମିତି ଫେରିଥାନ୍ତେ ଚାଉଳ, ପରିବା ଜାଳ ନେଇ ସେମାନେ ?ତାଙ୍କରି ବାଟକୁ ଚାହିଁଥିବାବେଳେ ପଦନା ଦୂରରୁ ତିନ୍ତି ତିନ୍ତି ଆସି ପହଞ୍ଚେ ।

ସାବିର ଛାତି ଧଡପଡ ହୁଏ । ଘରେ ଏକେଲା । ବାବା ବୋଉ ଘରେ ନାହାନ୍ତି । ପଦନି ଦୁଆର ମୁହଁରେ ପହଞ୍ଚିଲାବେଳକୁ ଗୋଟାସାରା ଜୁବୁବୁଡୁ । ତାଦେହରୁ ଧାରଧାର ପାଣିର ସୁଅ । ତାକୁ କେମିତି ସାବି କହଥାନ୍ତା, "ଯା, ବାବା ନାହାନ୍ତି ।" ଅନେକଦିନୁ ତା ସାଙ୍ଗେ ଟିକିଏ କଥା ହେବ ବୋଲି ଚାହିଁ ରହିଥିବା ସାବି ପାଇଁ ଏଇ ଶ୍ରାବଣ ଯେମିତି ଖୋରାକ ଯୋଗାଇଦେଇଛି । ଘର ଭିତରକୁ ଡାକେ । ଡିବି ଆଲୁଅ ଲଗେଇଦେଇ ବାପାର ଗାମୁଛାକୁ ବଢେଇଦିଏ ।

ଓଦା ସତସତ ଲୁଗାପଟାକୁ ପାଲଟି ଗାମୁଛା ପିନ୍ଧି ପଦନି ଅଖା ଉପରେ ବସିପଡେ । ଝୁଲେଇଦିଏ ଓଦାଲୁଗା ମାଟିବାରଣ୍ଡା ଚାଳରେ । ସାବି ତା ମୁହଁକୁ ଚାହେଁ । ଭେଣ୍ଡିଆ ଟୋକା ଛାତି ଭିତରେ ଏଉ ବର୍ଷା ସଂଧ୍ୟାରେ ଲୋଟିପଡିବାକୁ ତା ମନ ତହଳବିକଳ ହୁଏ ।

କଥା ଆରମ୍ଭ କରେ ସାବି "ବାବା ନାହିଁ । କେତେବେଳେ ଆସିବ କିଏ କହିପାରିବ ? ରାତି ହେଲାଣି । ଏଇଠି ରହିଯାଅ । ମୋତେ ଏଇ ନିଛୁମ୍ ରାତିରେ ଡରଲାଗୁଛି ।" ଏତକ କହିପକାଇ ଲଜେଇଯାଏ ସାବି ।

ସତକୁ ସତ ରାତିରେ ବର୍ଷାର ତାଣ୍ଡବଲୀଳା ଆରମ୍ଭ ହୋଇଯାଇଥିଲା । ଡିବିରି ଆଲୁଅରେ ଭାତ ମୁଠେ ଓ ଆକୁ ଚକଟା ଥୋଇଦେଥିଲା ପଦନି ସାମନାରେ । ପଦନି ଚାହୁଁଥିଲା ସାବିକୁ । ପେଟ କେଁ କେଁ କରିବାରୁ ମୁକ୍ତିଲାଭ କରିଥିଲା ।

ଧାରା ଶ୍ରାବଣ ତା ନାଁକୁ ସାର୍ଥକ କରି ମୂଷଳଧାରାରେ ବର୍ଷି ଚାଲିଥିଲା । ପବନର ସାଇଁ ସାଇଁ ଶବ୍ଦଭିତରେ ରହି ରହି ବିଲୁଆମାନଙ୍କର ଚିତ୍କାରରେ ଚମକି ଉଠୁଥିଲା ସାବି ।

ଅଖାପାଲ ପକାଇ ଶୋଇପଡିଥିଲା ପଦନି । ତା ଠାରୁ ହାତେଦୂରରେ ବିଛଣା ପାରିଲା ସେ । ଆଖିକୁ ନିଦ ଲାଗୁନଥିଲା । ଅମାନିଆଁ ଦେହ ଓ ମନ ବର୍ଷଣ ରାତିରେ ବିରହ ବେଦନାରେ ଛଟପଟ ହେଉଥିଲା । ମନରେ ତିଆରି କରିଥିବା ମୁରତି ସେଇ ଟୋକା ମରଦଟା ହାତେ ଛଡାରେ ଶୋଇରହି ନିଶ୍ଚିନ୍ତରେ ଘୁଙ୍ଗୁଡି ମାରୁଥିଲା ।

ସେ ଜାଣେନି କେତେବେଳେ ସକାଳ ହେଲା । କିନ୍ତୁ ରାତିରେ ଅଜଗର ସାପ ପରି କଣ ଗୋଟେ ତା ଦେହରେ ଗୁଡାଇ ଜଡାଇ ହୋଇ ଯାଇଥିଲା ଓ ତାକୁ ଆକ୍ରାମାକ୍ରା କରି ତଳେ

ପକାଇ ଦେଇ ତା ଦେହର ସମସ୍ତ ଶକ୍ତିକୁ ଶୋଷି ନେଇଥିଲା ।

ସାବି ଉଠିଲାବେଳକୁ ସକାଳର ସୁନେଲୀ କିରଣ ତା ଘରର ଚାଳ ଛପର ଉପରେ ପଡିସାରି ଥିଲା ଓ ଦୂରରୁ ତା ବାବା ବୋଉ ଆସୁଥିବାର ଦେଖା ଯାଉଥିଲା । ପଦନି ସେତେବେଳକୁ ବାହାରି ଚାଲି ଯାଇଥିଲା ।

ବାବାବୋଉ ଭଇ ପାତ୍ର ବୋଲି ପଦନି ହାତରେ ତାକୁ ଟେକିଦେଲେ । ସେ ଅନେକ ଦିନର ଘଟଣା । କେତେ ସ୍ୱପ୍ନ ନେଇ, କେତେ ଆଶା ନେଇ ପଦନି ସହିତ ଘରକରି ଏଇ ଗାଁକୁ ଆସିଥିଲା ସାବି । ପଦନିର ଭାଗ୍ୟ ସହିତ ସାବି ନିଜକୁ ଯୋଡିଦେଇ ହସକାନ୍ଦ ଭିତରେ ସମୟ ବିତାଇଥିଲା । କେତେ ଶ୍ରାବଣ ଆସି ତାର ହାତ ଇସେଇ ଦେଇଯାଇଥିଲା ସାବି ଓ ପଦନି ଜୀବନରେ ।

ଏଇମିତି ଏକ ଶ୍ରାବଣ ସନ୍ଧ୍ୟାରେ ସେ ଯେମିତି ପଦନିକୁ ପାଇଥିଲା, ସେଇମିତି ହଜାଇ ଦେଇଥିଲା ଆଉ ଏକ ଶ୍ରାବଣରେ । ଦେବୀନଦୀ ଗର୍ଭରେ କାମ ସାରି ଫେରିବାବେଳେ ଭଉଁରୀ ଭିତରେ ଛନ୍ଦିହୋଇ ପଡିଥିବା ଡଙ୍ଗାରୁ ଯେଉଁ କେତେଜଣ ବର୍ତ୍ତିକରି ଆସିଥିଲେ, ସେମାନଙ୍କ ଭିତରେ ପଦନି ନଥିଲା ।

ଡାଗି ମୁହଁକୁ ଚାହିଁ ତାର ଦିନକାଳ ଚାଲିଯାଉଥିଲା । କୋଳପୂର୍ଣ୍ଣ ହୋଇ ଅପୂର୍ଣ୍ଣ ରହିଯାଇଥିଲା । ଗୋଟେ ଗୋଟେ କରି ତନିଟା ଛୁଆ ତା ସଂସାରକୁ ଆସି ଅଳ୍ପଦିନରେ ତା ଆଖିରେ ଶ୍ରାବଣ ଛୁଟାଇଦେଇ ଚାଲିଯାଇଥିଲେ । ଯେଉଁ ଶ୍ରାବଣକୁ ନେଇ ସେ ତାର ସ୍ମୃତିର ଘର ତିଆରି କରିଥିଲା, ସେଇ ଶ୍ରାବଣ ତାକୁ ସମୟକ୍ରମେ ନିଉଛୁଣା ଲାଗିଲା । ତାକୁ ଲାଗୁଥିଲା ଯେମିତି ତା ଉପରେ ଦାଉ ସାଧିବାକୁ ଏଇ ଶ୍ରାବଣ ଆସୁଛି । ଶ୍ରାବଣ ତା ପାଇଁ ଦେହ ଦିଆନିଆର ସ୍ମୃତି ନହୋଇ, ଏକୁତିଶାଳର ଜଳନ୍ତାନିଆଁ ନହୋଇ, ଶ୍ମଶାନ ଘାଟ ପରି ଲାଗୁଥିଲା ।

ସେଇ ଶ୍ରାବଣର ଅନେକ ଦିନପରେ ପୁଣି ଥରେ ସେ ନିଜକୁ ଦେବୀନଦୀର ଆଡିବନ୍ଧରେ ଖଣ୍ଡେ ଚିରା ଜରି ଡାକୁଣୀଭିତରେ ପାଇଥିଲା । ଏବେ ନିଆଶ୍ରୀ ସାବି ବେଉଆ । ସ୍ୱାମୀ, ପୁତ୍ରମାନଙ୍କୁ ହରାଇ ଦେବୀନଈକୂଳର ଆଡିବନ୍ଧ ଉପରେ ପରିତ୍ୟକ୍ତ ଅବସ୍ଥାରେ ପଡି ଦେଖୁଛି ଶ୍ରାବଣର ତାଣ୍ଡବଲୀଳା ।

ଯେଉଁଦିନ ତା ଦେହଟା ପଦନି ସହିତ ଜଡିଯାଇଥିଲା, ସେଦିନ ତାକୁ ଲାଗୁଥିଲା ଅନେକ ସ୍ୱପ୍ନ ଭିତରେ ସେ ପାଲଟି ଯାଇଛି ଶ୍ରାବଣୀ । ଶିଶିରଭିଜା କାକର ଉପରେ ସେ ଚାଲିଯାଇ ଗୋଟାଇ ଆଣୁଛି ଫୁଲସମ୍ଭାର । ନିଜ ହାତରେ ଗନ୍ଥୁଛି ମାଳା । ପ୍ରିୟତମ ଗଳାରେ ଲମ୍ବାଇଦେଇ ନିବିଡ ବାହୁ ବନ୍ଧନରେ ହଜିଯିବାକୁ ତାର ମନ । କିନ୍ତୁ ଏହି ପାଚିଲାବାଳର ଢେଉରେ ଶ୍ରାବଣୀ ତାକୁ ଆନନ୍ଦ ଦେବା ପରିବର୍ତ୍ତେ, ତା ଆଖିର ଲୁହ ବାଟଭାଙ୍ଗି ତଳେ ଖସିପଡୁଛି । ସେ ନିଃସହାୟ । କେହି ନାହିଁ ତାର । ସ୍ୱାମୀ ଗଲା, ପୁଅ ଗଲେ, କେହିଫେରିଲେ ନାହିଁ । ଶେଷକୁ ସେହି ଘର ଖଣ୍ଡିକ ।

କିଏ କରିଦେବ ତା ପାଇଁ ଘର ? କିଏ ଆଣିଦେବ ତା ପାଇଁ ମୁଠିଏଭାତ ? କେତେଦିନ ଏଇ ବନ୍ଧଉପରେ, ଏଇମିତି ଅସହାୟଭାବରେ ସେ ପଡ଼ିରହିଥିବ ?ସ୍ୱଗତୋକ୍ତି କରୁଥିଲା ସାବି ।

ଚାହୁଁଥିଲା ବାହାରେ ଟିପିଟିପି ହୋଇ ଅନବରତ ଲାଗି ରହିଥିବା ବର୍ଷାକୁ । ଦେହରେ ବଳ ନାହିଁ ଯେ ଗୋଟିଏ ଗୋଟିଏ ପାହୁଣ୍ଡ ପକାଇ ଚାଲିଯାଇପାରିବ ଅନ୍ନଛତ୍ରରେ ବସିବାପାଇଁ । କେବେ ଅନ୍ନଛତ୍ରରେ ବସିନି ସେ । ଘରେ ଚୁଲିପଛେ ନଜଳିଲେ ଉପାସ ରହିଯାଏ, କିନ୍ତୁ ପଦନି ଚାଲିଗଲାବୋଲି ସରକାରୀ ଅନ୍ନଛତ୍ରରେ ବସିବ ?

ସେଇ ସାବି ଦେଖୁଥିଲା ତା ସାମନାରେ ଦେବୀନଈର ତାଣ୍ଡବନୃତ୍ୟ । ଅସହାୟା ଉମାଶିବଙ୍କ ଦ୍ୱାରା ନିର୍ଯ୍ୟାତିତା ହୋଇ ଦକ୍ଷରାଜାଙ୍କ ଉପରେ କ୍ରୋଧକୁ ଛାଡିବାଲାଗି ଅପେକ୍ଷାରତା । କେତେଥର ଏରୂପ ନେଲାଣି, ତାହା ଅନେକ ଜାଣନ୍ତି କିନ୍ତୁ ଏ ଭୟଙ୍କରୀ ପିଶାଚୀ ରୂପରେ ଦେବୀଙ୍କର ନରସଂହାର ଅଭିଯାନ ଭିତରେ ସାବି ପରି କୋମଳମନା, ନିଷ୍ପାପ ବୃଦ୍ଧା ଅବସ୍ଥା କଥା ତାର ମନକୁ ଆସୁନାହିଁ ।

ଉଠିବାର ଯୁ ନାହିଁ । ବୟସର ବୋଝ, ଦାରିଦ୍ର୍ୟର ତାଡନା ଓ ସର୍ବୋପରି ପଦନିର ଅନୁପସ୍ଥିତି ତା ଦେହର ବଳକୁ ଶେଷକରି ଦେଇଛି । ବାଡିଧରି ଚାଲିଗଲେ ଅନ୍ନଛତ୍ର ମୁଠେ ଆଣି ପେଟ ଭୋକକୁ ମେଣ୍ଟାନ୍ତା । ଦେହରେ ତାତି । ବଡ କସ୍‌ମସ୍ ଲାଗୁଛି । ଦିନେତ ଏଇ ଶ୍ରାବଣ ସନ୍ଧ୍ୟାରେ, ସେ ପେଟକୁ ଆଡେଇଦେଇ ଦେହଭୋକକୁ ମାରିବାକୁ ନିଜ ପେଟରୁ କାଟି ପଦନିକୁ ଦେଇଥିଲା ।

ନାଁ, ଉଠିବାର ଶକ୍ତି ନାହିଁ । ଅଣଓସାରିଆ ଖସଡା ନଈବନ୍ଧ ଉପରେ ଟିକିଏ ଗୋଡ ଖସିଗଲେ, ଉଠିବା କଷ୍ଟ । ଯମ ଯେ କାହିଁକି ଏ ପ୍ରାଣନେଉନାହିଁ ! ହନ୍ତସନ୍ତ ଓ କଳବଲ କରୁଛି । ଏହାଭାବି ନିଜକୁ ନିଜେ ବହେ ଗାଳିଦେଲା ।

ପଦନି ଚାଲିଗଲା; ସେ ଚାଲିଯାଇଥିଲେ ତାକୁ ଗତଦିନର କଥାଗୁଡକାକୁ ମନେପକାଇ ଝୁରି ହେବାକୁ ପଡୁନଥାନ୍ତା । ଶ୍ରାବଣ ଆସିବାମାତ୍ରେ ତା ଦେହ ନିହିକି ଉଠୁନଥାନ୍ତା । ଏ ବୟସରେ ଖାଇବାଚିନ୍ତା କରିବାକୁ ପଡୁନଥାନ୍ତା । ଦିନେ ଦେହ ଭୋଗ ପାଇଁ ସେ କଷ୍ଟ ପାଉଥିଲା; ଆଜି ପେଟ ଭୋକକୁ ମେଣ୍ଟେଇ ପାରୁନି ।

ଏ କଣ ଭାଗ୍ୟ ? ସେ କଣ ଗତ ଜନ୍ମରେ କିଛି ପାପ କରିଥିଲା, ନା ଏ ଜନ୍ମରେ ପାପ କରିଛି ? ବାପଘର ବଂଶରେ କେହି ନାହାନ୍ତି । ଡିଅ ଖଣ୍ଡିକ ପଡିଛି । ଘର ଭାଙ୍ଗିଗଲାଣି କେବେଠୁ । ଶାଶୁଘରକୁ ଆସିଥିଲା । ଶାଶୁ ଅଳ୍ପଦିନରେ ଚାଲିଗଲେ । ପଦନି ତାକୁ ଏକାରଖି କିଛି ନକହି ହଠାତ୍ ଦେବୀନଈକୁ ଶେଷନିଦ୍ରାର ସ୍ଥାନଭାବେ ବାଛିନେଲା । ପେଟରୁ କଷ୍ଟକରି ଜନ୍ମ କରିଥିବା ତିନିତିନିଟା ଝିଅ, ଗୋଟେ ହେଲେ ବଞ୍ଚି ରହିଲେ ନାହିଁ ।

ସାବି ଆକାଶକୁ ତେରଛାକରି ଚାହିଁଲା । ବହୁ ଦୂରରେ ଦେବୀନଦୀର କେଉଁଏକ ଶେଷସୀମାରେ ମିଶି ଯାଇଛି ଆକାଶ । ସବୁସମାନ । ବିରାଟକାୟ ଏହି ଆକାଶତଳେ କେତେ

ମଣିଷ, କେତେ ନଈ, କେତେ ପଶୁ, କେତେ ପକ୍ଷୀ ।

ସବୁତ ସେଇ ଠାକୁରଙ୍କ ଲୀଳା । ଅନେକ ଦିନହେବ ଗାଁ ଠାକୁରାଣୀ ମନ୍ଦିରକୁ ଯାଇନି । ଚାଲିବା କଷ୍ଟ । ଠୁକ୍‌ଠୁକ୍ କରିଯାଏ ।

କିଏ ଆଉ ମନାସିବ ? ସବୁତ ଶେଷ ହୋଇଯାଇଛି । ତା ସମୟ ମଧ୍ୟ ଅସ୍ତେ ଆସ୍ତେ ଶେଷ ହେବାକୁ ବସିଲାଣି । ତଥାପି ଏ ବୟସରେ ସେ କାହିଁକି ଯାଏ ? କାହିଁକି ଗୋଡଟାଣି ହୋଇଥାସେ ଗାଁର ଏହି କୋଣରେ ଥିବା ଭଙ୍ଗାହୋଇ ପଡିଥିବା ମନ୍ଦିରକୁ ?

ସେହିତ କେବଳ ସାହା ଭରସା ଗରିବର ଆହାପଦ ଶୁଣିବାକୁ । ଯାହାର କେହି ନାହିଁ, ତାର ଠାକୁର ଅଛନ୍ତି । ତାର ଠାକୁର ତାକୁ ସାହାଯ୍ୟ କରିବେ ।

ଠାକୁରାଣୀ ମନ୍ଦିରରେ କାତେ ପାଣି । ପୂରା ବୁଡିଯାଇଥିଲା । ଏବେ ଛାଡିଗଲାଣି । ସମସ୍ତଙ୍କ କଥା ବୁଝୁଥିବା ଏଇ ଠାକୁରାଣୀ ବନ୍ୟାକଥା ଜାଣିପାରିଲେ ନାହିଁ କେମିତି ? ଯଦି ଜାଣିଥାନ୍ତେ ତେବେ ନିଜକୁ ନିଶ୍ଚେ ରକ୍ଷାନକରିଥିଲେ ବି ସାବିକୁ ରକ୍ଷାକରି ଥାଆନ୍ତେ । ନିଜକୁ ରକ୍ଷାକରି ଥାଆନ୍ତେ ।

ନାଁ, କେହି ଠାକୁର ନାହାନ୍ତି ।

ତାର ମନ ମାନୁ ନଥିଲା । ଠାକୁର ଥିବା ନଥିବାରୁ କଣ ତାର ପେଟଭୋଗ ଅଟକିଯିବ ? ସାବି ବେଉଆ ମହନି ଟୋକାର ବାଟ ଚାହୁଁଥିଲା । ପଦନି ଭଳି ଭେଣ୍ଡିଆଟିଏ । ଗାଁଟି ଯାକର ହାନିଲାଭ ଯେମିତି ସବୁ ତାରି ମୁଣ୍ଡରେ । ଘରଘର ବୁଲି ପଚାରିବ କଣ ଦରକାର । ସେ ନଥିଲେ ସାବି କେମିତି ଆସିଥାନ୍ତା ବନ୍ଧଉପରକୁ ? ନଈପାଣି ଆସିବାମାତ୍ରେ ଜଣକୁଜଣ ଏଇ ବନ୍ଧଉପରେ ଆଣି ଥୋଇଦେଲା । ସରକାରଙ୍କଠାରୁ ଝରିପାଲ ଆଣି ଘର କରିଦେଲା ।

ମହନି ସାବିର ଭଲମନ୍ଦ ବୁଝେ । ଦିନେ ଦିନେ କହିବ, ତୁ ମୋ ମା । ମା କାମ କରିବିନିତ ଆଉ କାହାକାମ କରିବି ?

ନିଜ ପୁଅ ପରି କାମ କରେ ମହନି । ସବୁଘରେ ପୁଅ । ମହନି ନଥିଲେ ତାକୁ କେତେ ହଇରାଣ ହେବାକୁ ପଡନ୍ତା ।

ମହନି ବି ଦେଖାଯାଉନି । ସେ ଅନ୍ନଛତ୍ର ନିକଟରେ ଅଛି । କୋଉଁ ଠାକୁର ସଂସ୍ଥା ଏଥରକ ଏଠି ଅନ୍ନଛତ୍ର ଖୋଲିଛି । ଠାକୁରସଂସ୍ଥା ନାଁ ଶୁଣତ ଗାଁଲୋକେ ସବୁ ଯାଉଛନ୍ତି । ଝିଅବୋହୁଏ ଓଢଣା ଟାଣି, କାଖରେ ଛୁଆଧରି ପେଟପୂରା ଖାଇ ଆସୁଛନ୍ତି । ନଈବଢି ହେବାର ଦୁଇଦିନପରେ ସେମାନେ ଗାଁକୁ ଆସିଥିଲେ । ମହନି ତାଙ୍କ ସାଙ୍ଗରେ ଏ ମୁଣ୍ଡ ବୁଲାଇ ଦେଖାଇଥିଲା ।

ବୟସ୍କ ସନ୍ୟାସୀ ଗେରୁଆଲୁଗା ପିନ୍ଧିଛନ୍ତି, ମୁଣ୍ଡରେ ଟୋପି । ତାଙ୍କୁ ଦେଖି ହାତଯୋଡି ନମସ୍କାର କଲା । ସ୍ନେହବୋଳା ସ୍ୱରରେ ସେ ପଚାରିଲେ, ମା, କେମିତି ଅଛ ?

କଣ ସେ କହିଥାନ୍ତା, କେମିତି ରହିଛିବୋଲି । ହାତ ଦେଖେଇଲା ଝରିଢଙ୍କା ଘର ଓ ଚୁଲି ଜଳିନଥିବା ହାଣ୍ଡି ଆଡକୁ ।

ମହନି ଖାଇବାକୁ ଆଣି ଦେଇଯାଉଛି ଦୁଇ ତିନିଦିନ । ସେ ତ ଚାଲିପାରୁନି । ଖସଡା ବନ୍ଧ ଉପରେ ଯିବାକୁ ତାହାର ସାହସ କୁଳାଉନାହିଁ । ବାହାରେ ବର୍ଷାର ଅବିରାମଗତି । ଦେହରେ ତାତି । ଜରଜର ଲାଗୁଛି । ମୁଣ୍ଡବିନ୍ଧା ଗତରାତିରୁ ଖୁବ୍ ଜୋରରେ ଆରମ୍ଭ ହୋଇଯାଇଛି ।

ମହନି ଏ ପର୍ଯ୍ୟନ୍ତ ଆସିନାହିଁ । ଗାଁରେ ନାହିଁ ବୋଧହୁଏ । ଅନ୍ନଛତ୍ର ନିକଟରେ ହୁଏତ ଲୋକମାନଙ୍କୁ ଖାଇବାକୁ ଦେବାରେ ସାହାଯ୍ୟ କରୁଥିବ । ଗତକାଲି ସକାଳେ ମହନି ଆସି କହିଥିଲା, ସାବିମା ! ତୁ ଆଦୌ ବ୍ୟସ୍ତହନା । ସରକାର ଘର ଭାଙ୍ଗିଯାଇଥିବା ଲୋକଙ୍କ ପାଇଁ ଘର କରିଦେବେ । ତୋ ଘର କରିବା ଦାୟିତ୍ୱ ମୋର । ପାଣି ଆସ୍ତେ ଅସ୍ତେ ଛାଡି ଆସିଲାଣି । ଆମେ ଆଉ ୪/୫ ଦିନପରେ ଗାଁ ଭିତରକୁ ପଶିଲେ ତୋ ପାଇଁ ସବୁ ବ୍ୟବସ୍ଥା କରିଦେବି ।

ମହନି କଥାରେ ଯାଦୁ ଅଛି । ପଦନି ଏଇମିତି କଥା ତାକୁ କହେ ।

ଦିନେ ପଦନି କହିଥିଲା, ସାବିଲୋ ! ତୁ ମୋତେ ବାହାହେଲୁ ବୋଲି ମନଦୁଃଖ କରୁଛୁ ? ତୋତେ ଭଲରେ ରଖିବା ପାଇଁ ମୁଁ ତ ସବୁବେଳେ ଚେଷ୍ଟାକରୁଛି । ହେଲେ ମୋ କପାଳ ମନ୍ଦ । ଯାହା ଭାଗ୍ୟରେ ଥିବ, ତାହା ନିଶ୍ଚେଫଳିବ । ଭାଗ୍ୟରେ ଗରିବ ଲେଖା ହୋଇଛି । ତାକୁ କିପରି ବଦଳାଇ ପାରିବା ? ପଦନି ନାହିଁ । ପଦନି ତାର ଆଜି ଭାରି ମନେ ପଡୁଛି । ଦେବୀନଈର ବନ୍ଧଉପରୁ ତା ମୁହଁ ଦେଖିପାରୁଛି ସାବି । ବର୍ଷା ଏ ପର୍ଯ୍ୟନ୍ତ ଛାଡିନାହିଁ । ଆକାଶରେ ଘୋଟମାଟ ବର୍ଷା । ପଦନି ଟିକିଏତା ପାଖକୁ ଆସନ୍ତା ନାହିଁ ? ମନେ ମନେ ଭାବୁଛି ସାବି । ଏଇ ଶ୍ରାବଣ ସଂଧ୍ୟା ତାକୁ କେତେ ଆନନ୍ଦ ଦିଅନ୍ତା ! ତାକୋଳରେ ଲୋଟିପଡନ୍ତା ସେ ।

ଦୂର ଦିଗ୍‌ବଳୟରେ ସୂର୍ଯ୍ୟ ବୁଡିଯାଉଛନ୍ତି । ଘନ କଳାରଙ୍ଗର ଶାଢୀଟିଏ ପିନ୍ଧିଛି ଆକାଶ । ଦେବୀ ଦାନବୀ ପାଲଟି ଯାଇଛି । ସେଇ ଦୂରରୁ ଦେଖିପାରୁଛି ସାବି ପଦନିର ଚେହେରା । ଯେଉଁ ଶ୍ରାବଣ ସଂଧାରେ ତା ବାହୁଭିତରେ ନିଜକୁ ହଜାଇ ଦେଇଥିଲା, ସେହି ସଂଧ୍ୟା ଯେମିତି ପୁଣି ସେ ଦେଖିପାରୁଛି ! ପଦନି ହେଇ ତାକୁ ଦୂରୁ ଡାକୁଛି ।

ସାବି; ଲୋ ସାବି ! ମୁଁ ତୋତେ ନେବାକୁ ଆସିଛି । ତୋତେ ଏକାଛାଡିଦେଇ ମୋତେ ଭଲ ଲାଗୁନି । ମୁଁ ଏବେ ସୁଖରେ ଅଛି । ମୋ ଭାଗ୍ୟବଦଳି ଯାଇଚି । ମୋ ଘରେ ଅନେକ ଧନ । କେବଳ ତୋର ଅଭାବ । ତୁ ଆସିଲେ ଆମେ ଖୁସିରେ ରହିବା । ଆଃ, ଚଞ୍ଚଳ ଚାଲିଆ ।

ହେଇ ପଦନି ଡାକୁଛି ତାକୁ । ତାର ପଦନି । ଆଦ୍ୟ ଶ୍ରାବଣର ମନର ମଣିଷ । ତାକୁ ଯିବାକୁ ହେବ । ନଈବନ୍ଧଉପରେ ଏଇ ଝରିପାଲ ତଳେ ସେ ରହିବନାହିଁ । ପଦନି ଘରେ ସୁଖରେ ରହିବାକୁ ସେ ଡାକୁଛି । ତାକୁ କେମିତି ମନା କରିବ ? ଜନ୍ମଜନ୍ମାନ୍ତର ଧରି ତା ସହିତ ରହିବାକୁ ସେ ଅଗ୍ନିକୁ ସାକ୍ଷୀରଖି ବାହା ହୋଇଥିଲା । ସେ ତା ପାଖକୁ ଚାଲିଯିବ । ନଈବନ୍ଧ ଅନ୍ଧାର । ବର୍ଷା ଜୋରରେ ଛେଚୁଛି । ଗୋଡ କାଢିଲା ସାବି । ପଦନି ଡାକୁଛି । ସେ କେମିତି ବସି ରହିବ !

ହେଇ ପଦନିର ସେଇ ମୁହଁ । ଆଗରେ ସେ ଠିଆ ହୋଇଛି ପାଖକୁ ଡାକୁଛି । ଆଉ ପାହୁଣ୍ଡେ ଚାଲିଗଲେ ସେ ପଦନି ପାଖରେ ପହଞ୍ଚିବ । ସବୁବେଳେ ପଦନି ଏଇଆ । ଯେତେ

କହିଲେ ଧିରେଧିରେ ଚାଲିବ ନାହିଁ । ଜୋର ଜୋର କରି ପାହୁଣ୍ଡ ପକାଇ ଆଗକୁ ମାଡିଯିବ ।

ପଦନିକୁ ଦେଖି ଖୁସି ଲାଗୁଥିଲା ସାବିକୁ । ଅନେକ ଦିନପରେ ସେ ଦେଖୁଛି । କିଛି ବଦଳି ନାହିଁ । ମୁଣ୍ଡବାଳ ଧଳା ହୋଇନି । ସେଇ ଟୋକା ପଦନି ।

ଦେବୀନଈରେ ପାଣି ତାଣ୍ଡବନୃତ୍ୟ କରୁଛି । ଘୋଘୋ ଶବ୍ଦ । ତାରି ଭିତରେ ଭାସି ଆସୁଛି ପଦନିର ମୁହଁ ।

ସାବି ଚାଲିଛି ଆଗକୁ । ଖସଡାବାଟରେ ତା ଜୋର ଦେଇ ଦେଇ ସେ ଚାଲିଛି । ପଦନି ଏଇ ପାଖରେ । ତା ପାଖରେ ପହଞ୍ଚିଲେ ଦିହେଁ ସାଙ୍ଗହୋଇ ଚାଲିବେ । ନୂଆଘର କରିଛି ପଦନି ।

ହଠାତ୍ ଘୋ କରି କଣ ଶବ୍ଦ ହେଲା । ବନ୍ଧଉପରୁ କୁକୁର ଗୁଡାକ ଭୋଭୋ କରି ଉଠିଲେ ।

ସକାଳୁ ସକାଳୁ ମହନି ଦୌଡି ଦୌଡି ଆସି ପହଞ୍ଚିଲା । ସାବି ପାଖରେ । ବର୍ଷା ଛାଡି ଯାଇଛି । ବିଛାଡି ହୋଇ ପଡିଛି ଖରା-ଦେବୀନଈ ଓ ବନ୍ଧ ଉପରେ । ଲୋକମାନେ ନିଜ ନିଜ କାମ କରିବାରେ ବ୍ୟସ୍ତ ।

ମହନି ଡାକ ଛାଡୁଥିଲା, ସାବିମା ! ହେ ସାବିମା! ସରକାରୀଲୋକ ଆସିଛନ୍ତି । ଘର କରିବା ପାଇଁ ଦସ୍ତଖତ ନେବେ । ଆଃ, ମୋ ସାଙ୍ଗେ ଚିବୁ ।

ଦେବୀନଈ ବହିଚାଲିଛି ନୂଆରୂପଧରି । ଶ୍ରାବଣର ବର୍ଷା ବନ୍ଦ ହୋଇଯାଇ ଖରାର ତାପ ବଢିବାରେ ଲାଗିଛି । ମହନିରଡାକ ପ୍ରତିଧ୍ୱନିତ ହୋଇ ଫେରିଆସୁଛି ତାରିପାଖକୁ: ସାବିମା! ହେ ସାବିମା !



# ପଚାଶବର୍ଷ ପରେ

ପ୍ରବଳ ବର୍ଷା ସତ୍ତ୍ୱେ ମୁଁ ସ୍କୁଟର୍ ଚଳାଇ ଭୁବନେଶ୍ୱରଠାରେ ଥିବା ମୋର ସୁରକ୍ଷିତ ସୁରମ୍ୟ ଗୃହରେ ପହଞ୍ଚିଲି । ନ ପହଞ୍ଚିଥିଲେ ହୁଏତ ପୃଥିବୀ ପ୍ରଳୟ ହୋଇ ଯାଇନଥାନ୍ତା । ଅନବରତ ବର୍ଷା ଲାଗି ରହିଥିବା ହେତୁ ଦୀର୍ଘ ଶହେ କି.ମି. ଆସିବା କେତେ କଷ୍ଟ ଥିଲା, ତାହା ମୁଁ ଅନୁଭବ କରି ପାରୁଥିଲି । ବାଟସାରା ପାଣି ଭର୍ତ୍ତି । ଖାଇ ହେତୁ ପାଣି ପଶି ଯାଇ ସ୍କୁଟର୍‌ଟା କେତେ ଥର ଖସିପଡିବା ଅବସ୍ଥାରୁ ବର୍ତ୍ତି ଯାଇଥିଲା, ତାହା ମୁଁ ତରବରରେ ଆସିଥିବା ଯୋଗୁ ଅନୁଭବ କରିପାରି ନଥିଲି । କେମିତି କରିଥାନ୍ତି ? ଗତ ରାତିରେ ମୁଁ ଦେଖିଥିବା ସ୍ୱପ୍ନ ମୋତେ ବିବ୍ରତ କରୁଥିଲା । ଏ ପର୍ଯ୍ୟନ୍ତ ମନରେ ମୋର ସେଇ ଚିନ୍ତା ।

X X X X

ନିଘୋତ ନିଦରେ ଶୋଇପଡି ଘୁଙ୍ଗୁଡି ମାରିବା ବେଳେ ମୁଁ ବହୁ ଦୂରରୁ ଏକ ପରିଚିତ ସ୍ୱର ଶୁଣିବାକୁ ପାଇଲି ।

ମୋର ନିଃଶ୍ୱାସ ରୁନ୍ଧି ହୋଇ ଯାଉଛି... ପୁଅ... ।

ମୁଁ ସେଇ ନିଦୁଆ ଆଖିରେ କହୁଥିଲି,

ବାପା, ବାପା, ତୁମେ ଚାଲି ଯାଅନା । ବାପା ! ମୁଁ ତୁମକୁ ଅନୁରୋଧ କରୁଛି । ମୁଁ ତୁମକୁ ବହୁତ ଭଲପାଏ । ମୁଁ ତୁମକୁ ଭଲ ପାଏ । ତୁମ ସହିତ ଅନେକ କଥା ହେବାକୁ ଅଛି । ଆମେ ନିଶ୍ଚିତ କଥା ହେବା ।

ପୁଅ, ତୁମେ କଣ ଅନୁଭବ କରିପାରୁଚ ଆମର ଏହି ପ୍ରିୟ ପୈତୃକ ଜମି କେମିତି ଦୋହଲୁଅଛି ?

ମୁଁ ତୁମକୁ ଶୁଣିପାରୁନି । ମୁଁ କିଛି ଅନୁଭବ କରିପାରୁନି । ଏଇଠି ମୋ ଘର ନୁହେଁ । ଆମ ଘର, ତୁମ ଘର, ତୁମେ ମୋତେ ଯେଉଁ ମାଟିରେ ଜନ୍ମବେଳେ ଥୋଇ ଦେଇଥିଲ ସେ ଏଠୁ ଅନେକ ଦୂରରେ । ଶହେ କି.ମି. । ଏଠି ମୁଁ ବିରାଟ ବିରାଟ କୋଠାଘର ଦେଖୁଛି ।

ସେ ଦୀର୍ଘଶ୍ୱାସ ଛାଡୁଛି, ଗର୍ଜନ କରୁଛି, ବିକଳରେ କାନ୍ଦୁଛି । ତୁମେ ଯେଉଁମାନେ ବଞ୍ଚିଛ, ତାକୁ ଜାଣିପାରୁନା କି ?

ଏ ମାଟି କାନ୍ଦିପାରେ, ଏ ମାଟି କାନ୍ଦୁଛି ଏକଥା ତୁମେ ଭାବିପାରୁଛ କି ?

ତୁମେମାନେ କଣ କାଲ ହୋଇଗଲଣି ? ତା ଗର୍ଜନରେ ମଣିଷ ହୃଦୟ ଫାଟିଯାଉଛି, ବିକଳ କ୍ରନ୍ଦନ ସମଗ୍ର ବିଶ୍ୱକୁ ଘୋଟିଯାଉଛି, ଏହା ତୁମମାନଙ୍କୁ ବଧିର କରିଦେଲାଣି କି ? ପୁଣି ପରମାଣୁ ବୋମାର ପରୀକ୍ଷା । କିଏ କାହାକୁ ମାନୁଛି । ସମସ୍ତେ ପୃଥିବୀ ଦେହ ଉପରେ ନିଜ ମନଇଚ୍ଛା ଅଭିଯାନ ଆରମ୍ଭ କରୁଛନ୍ତି । ଏ ମାଟି ଜଳୁଛି । ଏ ମାଟି ମା ବିକଳରେ ଚିତ୍କାର କରି, କାନ୍ଦି କାନ୍ଦି, ଆଖିରୁ ଅନବରତ ଲୁହ ବୁହାଇ ରକ୍ଷା ପାଇବା ପାଇଁ, ସୁରକ୍ଷାରେ ରହିବା ପାଇଁ ଅନୁନୟ ବିନୟ କରୁଛି, ଭିକ୍ଷା ମାଗୁଛି, ଯୋଡହସ୍ତ ହୋଇ ଠିଆ ହୋଇଛି । ତୁମକୁ କଣ ଏହା ଦେଖାଯାଉନି । ତୁମେ କଣ ହିରୋସୀମା ଉପରେ, ନାଗାସାକୀରେ ପଡିଥିବା ବୋମା କଥା ଭୁଲିଗଲଣି । ତୁମେ କଣ ବମ୍ବେ ନଗରୀରେ ଛୋଟ ଛୋଟ ବିସ୍ଫୋରଣରେ ମରିଥିବା ଲୋକଙ୍କ ବିଧବାମାନଙ୍କର ଲୁହ ଶୁଖିଗଲାଣି ବୋଲି ଭାବିଲଣି କି ?

ବାପା; ମୁଁ ସବୁ ମନେରଖିଛି । ମୁଁ କୌଣସି କଥାକୁ ଭୁଲିନି । ବମ୍ବେ ନଗରୀରେ ଯେଉଁଦିନ ବିସ୍ଫୋରଣ ହେଲା, ସେଦିନ ଭାରତରେ ଯେଉଁ ହିଂସାକାଣ୍ଡ ଘଟିଲା, ଯେଉଁ ସାଂପ୍ରଦାୟିକ ଦଙ୍ଗାକୁ ବ୍ୟାପକ କରିବାକୁ ଚେଷ୍ଟା କରାଗଲା, ଯେମିତି ବମ୍ବେ ସହରରେ ଜନଜୀବନ ବିପର୍ଯ୍ୟନ୍ତ ହୋଇପଡିଲା, ତାକୁ କେମିତି ଭୁଲିବି । ଅଯୋଧ୍ୟାରେ ବିବାଦୀୟ ରାମ ଜନ୍ମଭୂମି ଉପରେ ଭାଙ୍ଗିଗଲା ବହୁ ବର୍ଷର ପୁରୁଣା ଧର୍ମପୀଠ ବାବ୍‌ରୀ ମସଜିଦ୍ । କେତେ ଲୋକ ମଲେ ରାମରଥକୁ ନେବା ପାଇଁ ।

ମୁଁ ଏଇଠି ବସି ମୋ ଆଖି ସାମନାରେ ଏଇ ଘଟଣା ଘଟୁଛି ବୋଲି ଅନୁଭବ କରୁଥିଲି, ବମ୍ବେ ନଗରୀର ବଡ ବଡ ରାଜରାସ୍ତାରେ ଲେଲିହାନ ଅଗ୍ନିଶିଖା ବଡ ବଡ ଇମାରତମାନଙ୍କୁ ଛୁଇଁ ଦେଇ ଯାଇଥିବାର ଲକ୍ଷ୍ୟ କରିଥିଲି । ମୋତେ ଲାଗୁଥିଲା ମୋ ଘର ପଛ ପାଖରେ ବିସ୍ଫୋରଣ ଘଟୁଛି । ହିରୋସୀମା, ନାଗାସାକୀର ବୋମା କଥା ମୁଁ ତୁମଠୁ ଶୁଣିଥିଲି । ତୁମ କୋଳରେ ବସି ସେଇ କାହାଣୀକୁ କେତେ ଥର ଶୁଣିଛି ।

ମୁଁ ରାତି ଅଧରେ ଚିତ୍କାର କରି ଉଠିପଡିଲି । ମୋ ଦେହସାରା ଝାଳ ଜୁଡୁବୁଡୁ । ମୁଁ ଏବେ ବି ଭୟରେ ଥରି ଉଠୁଛି । ବିସ୍ଫୋରଣ ନାଁ ଶୁଣିବା ମାତ୍ରେ ମୋ ଦେହ ଶିତେଇ ହୋଇ ଯାଉଛି । ଅକଥନୀୟ ଯନ୍ତ୍ରଣା ସେ ବ୍ୟଥା । ବ୍ୟଥା ଓ ଯନ୍ତ୍ରଣା କାହା ପାଇଁ ? କେଉଁଥି ପାଇଁ ? କାହା ସ୍ୱାର୍ଥରେ ?

ବିଜ୍ଞାନ ନା ଜାତୀୟ ଅର୍ଥନୀତି ନା ଏକଛତ୍ର ସାମ୍ରାଜ୍ୟର ପରିକଳ୍ପନା ।

ବୋମା ବୋମା । ବିସ୍ଫୋରଣ ବିସ୍ଫୋରଣ ।

ବାପା; ମୁଁ ସେଦିନ ଚିତ୍କାର କରି ଉଠିଲି । ଡାକିଲି ତୁମକୁ ।

ତୁମେ ସତରେ ବଞ୍ଚିଛ କି ? ନା, ତୁମେ ଅନେକ ଦିନରୁ ମରିଯାଇଛ । ତୁମ ସ୍ମୃତିର ଚିହ୍ନ ଏବେ ବି ଆମ ଗାଁ ଭୂଇଁରେ ସଯତ୍ନ ସାଇତା ହୋଇ ରହିଛି ।

ସବୁଆଡେ ନୀରବ, ନିସ୍ତବ୍ଧ, ଶୂନ୍‌ଶାନ୍...

ବିଜ୍ଞାନର ବୈଜୟନ୍ତୀ ଧ୍ୱଜା ଉଡାଇବା ପାଇଁ

ଜାତୀୟ ଅର୍ଥନୀତିର ସ୍ୱାର୍ଥକୁ ସୁରକ୍ଷା କରିବା ପାଇଁ

ସାମ୍ରାଜ୍ୟବାଦୀ ଶକ୍ତିର ଅଭିବୃଦ୍ଧି ନିମିତ୍ତ...

ସତରେ ଏ ମାଟି କାନ୍ଦୁଛି, ଘରର ଝରକା ଦୋହଲୁଅଛି । ଆମ୍ବତୋଟାରେ ଝଡା ଆମ୍ବପତ୍ରକୁ ସାଉଁଟୁଥିବା, ଅଧାସିଆଁ ଲୁଗାପିନ୍ଧି ପେଟ ଭୋକରେ ଜଳୁଥିବା ବୋହୂରାଣୀର ଜଠରରେ ବଢି ଉଠୁଥିବା ଛୁଆଟା ଥରି ଉଠୁଛି । ପେଟ ଭିତରୁ ବାହାରି ଆସିବାକୁ ମନ କରୁନି । ସେ ଥରି ଯାଉଛି, ଡରି ଡରି କାକୁସ୍ଥ ହୋଇ ସେ ଯଦି ଏହି ମାଟିରେ ପାଦଦିଏ, ତେବେ ତା ପାଦ ଏ ଭୂଇଁରେ ରହିବ କି ନାହିଁ ସେହି ଚିନ୍ତାରେ ଶଙ୍କିତ ହୋଇ ଯାଉଛି ।

ବାପା ମୁଁ ତୁମକୁ ମନେ ପକାଉଛି । ମୁଁ ବଡପାଟିରେ ଚିତ୍କାର କରି ତୁମକୁ ଡାକୁଛି । ତୁମେ କେଉଁଠି ? ମୋ ସ୍ୱର ମିଳେଇ ଯାଉଛି ଶୂନ୍ୟରେ । ଚାରିଆଡେ କେବଳ ପ୍ରଚଣ୍ଡ ନୀରବତା । ମୋ ଆତ୍ମା ଭିତରେ ଭୟ ଲୁଚି ଯାଉଛି । ମୁଁ ଥରି ଥରି ବାରମ୍ବାର ଚିତ୍କାର କରୁଛି... ନିଦ ଭାଙ୍ଗିଯାଉଛି ।...

ସବୁ ଶୂନ୍‌ଶାନ୍ । ରୋଷେଇଘର ଟ୍ୟାପ୍‌ରୁ ବୁନ୍ଦା ବୁନ୍ଦା ଜଳ ଟପ୍ ଟପ୍ ହୋଇ ପଡିବାରେ ଲାଗିଛି । ମୋ ବିଛଣାରେ ମୋ ଦେହକୁ ଜଡାଇ ମୋ ପତ୍ନୀ ଶୋଇ ରହିଛନ୍ତି । ତାଙ୍କ ଦେହ ଉପରେ ମୋ ଚଗଲା ପୁଅର ଗୋଡ ଏକ ତ୍ରିକୋଣ ଭୂମି ସୃଷ୍ଟି କରିଛି । ଝରକା ଖୋଲି ଘର ଭିତରେ ରାଜଧାନୀ ଭୁବନେଶ୍ୱରରେ ବହୁଥିବା ସକାଳୁଆ ପବନକୁ ମୁଁ ଅନୁଭବ କରୁଥିଲି ।

ମୋର ମନେହେଲା ମୁଁ ଟିକିଏ ଚାଲନ୍ତି । ସକାଳୁଆ ପବନ ଓ ସୂର୍ଯ୍ୟକିରଣରେ ମୋ ଦେହକୁ ଆଭ୍ରାମାଭ୍ରା କରିପକାନ୍ତି । ମୁଁ ମର୍ଣ୍ଣିଂୱାକ୍ କରିବା ପାଇଁ ମୋର ବହୁପୁରୁଣା ହ୍ୟାପ୍ ପ୍ୟାଣ୍ଟକୁ ବାହାର କଲି । ଅନେକ ଦିନ ତଳେ ମୋତେ ମୋ ବୋଉ ଏଇଟିକୁ ଉପହାର ଦେଇଥିଲା । ମୋ ବୋଉ ନାହିଁ । ଆଜକୁ ପାଞ୍ଚ ବର୍ଷ ହେଲାଣି । ମୁଁ ସୈନିକ ସ୍କୁଲ ଗେଟ୍ ଦେଇ ମଞ୍ଚେଶ୍ୱର ରେଲ୍‌ଡବା କାରଖାନା ଆଡକୁ ଝପଟି ଝପଟି ଚାଲୁଥିଲି ।

ରାସ୍ତାକଡରେ ଅନତି ଦୂରରେ ମହାଦେବ ମନ୍ଦିର । କେତେଥର ଏହି ମନ୍ଦରକୁ ଆସିଛି । ଏଇ ମନ୍ଦିରରେ ନିରୋଳାରେ ବସି କେତେ ସମୟ କଟାଇଛି । ଆଜି ଅନୁଭବ କରୁଥିଲି ଏକ ଆକର୍ଷଣ । ଯେମିତି ଜାହାଜ ଚୁମ୍ବକ ଆଡକୁ ମାଡି ଚାଲିଛି । ମୁଁ ମନ୍ଦିର ବେଢାରେ ବସି ବସି

ମନ୍ଦିରକୁ ଚାହିଁଲି । ବୃହତ୍ ଲିଙ୍ଗ । କିଛି ବେଲପତ୍ର ତା ମୁଣ୍ଡପରେ । ଶୁଖିଲା ବେଲପତ୍ର ଢେର ସାରା ବେଢା କଡରେ ଗଦା ହୋଇଛି । ଭକ୍ତମାନଙ୍କର ଭକ୍ତିର ସଙ୍କେତ ।

ମୁଁ ଭକ୍ତ ନୁହେଁ । ମୁଁ ଏଠାକୁ କାହିଁକି ଆସିଲି ? ମୋର ବଡ ପାଟିରେ ଚିତ୍କାର କରିବାକୁ ମନ ହେଲା । ଜୋରରେ ଡାକିଲି, ବାପା, ବାପା । ହଠାତ୍ କେଉଁଠୁ ଗୋଟେ ସ୍ୱର ଶୁଣାଗଲା । ମୋ ବୋଉର ସ୍ୱର ।

କିରେ ! ତୁ ଏଠି ବସି ବାପାକୁ କାହିଁକି ଡାକୁଛୁ ? ବାପା ମରିବା କେତେବର୍ଷ ହେଲାଣି । ମୋ ମରିବା ପାଞ୍ଚବର୍ଷ । ତୁ କଣ ବାପାକୁ ମନେରଖିଛୁ ?

ଦେଖ୍, ମୁଁ ମୋ ଭୂଇଁର ବାସ୍ନାକୁ ମନେ ରଖିଛି । ତୋତେ ବାରମ୍ବାର କହିଥିଲି ସେଇ ଗାଁ ମାଟିରେ ମୋତେ ପୋତି ମୋ ପାଉଁଶକୁ ତାରିଆଡେ ବିଞ୍ଚିଦେବୁ । ତୁ ମୋତେ ନେଇ ମହୋଦଧି କୂଳରେ ପୋଡିଲୁ । ମୋ ପାଉଁଶକୁ ସମୁଦ୍ର ପାଣିରେ ପକାଇଲୁ । କୁଆଡେ ଗଲା ସେ ପାଉଁଶ ?

ଆଉ ବ୍ୟସ୍ତ ହୋନା । ବାପ ଶ୍ରାଦ୍ଧ ହେବାକୁ ଆଉ ସପ୍ତାହେ ବାକି । ମୁଁ ସେଦିନ ଘରକୁ ଆସିବି । ମୋତେ ଭଲ କରି ଖାଇବାକୁ ଦେବୁ ।

ବୋଉ ବୋଉଲୋ, ଲୋ ବୋଉ... ମୁଁ ଚିତ୍କାର କରି ଉଠିଲି । ମୋ ବାପାର ଶ୍ରାଦ୍ଧ ଦିନ ଆଉ ମାତ୍ର ସାତଦିନ । ଆଜି ବାପା ମୋତେ ବାରମ୍ବାର ମନେ ପକାଉଛନ୍ତି । ବୋଉ ବି ।

ମଲାଲୋକମାନେ ପୃଥିବୀର ଯନ୍ତ୍ରଣାକୁ ବୁଝିପାରୁଛନ୍ତି ।

ବାପା; ଏ କେମିତି ଘଟୁଛି ?

ହଁ, ହଁ, ମଲାଲୋକେ ଜୀବିତ ମଣିଷମାନଙ୍କ ଠାରୁ ବେଶୀ ଜ୍ଞାନୀ । ...ମୋ ବାପାର ସ୍ୱର ଶୁଣାଗଲା ।

ମୁଁ ବାପାକୁ କୁଣ୍ଢାଇବାକୁ ଭାବିଲି । ମୋ ସାନପୁଅ ମୋତେ କୁଣ୍ଢାଇ ଗେଲ କରିବା ପରି, ମୁଁ ମୋ ବାପା ଦେହରେ ଜଡାଇ ହୋଇ ଯିବାକୁ ମନ କଲି । କେତେ ବ୍ୟବଧାନ ମୋର ଓ ମୋ ବାପା ଭିତରେ । ସେ ଆଉ ଗୋଟେ ପୃଥିବୀରେ..... ମୁଁ ଭିନ୍ନ ଏକ ଇଲାକାରେ । ମୋତେ ମୋ ବାପାକୁ ସେଠାରୁ ଫେରାଇ ଆଣିବାକୁ ହେବ । ମୁଁ ଦୁଇହାତକୁ ଜୋରରେ ବଢାଇଦେଲି ।

ନା, ନା, ସାବଧାନ । ତୁ ଗଭୀର ଖାଲ ଭିତରେ ପଡିଯିବୁ । ତୋର ମୃତ୍ୟୁ ହେବ ।

ମୁଁ ଚମକି ପଡିଲି । ଧଳାଲୁଗାରେ ସର୍ବାଙ୍ଗ ଆଚ୍ଛନ୍ନ ହୋଇ ଚାଲି ଯାଉଥିବା ମଣିଷଟିଏ । ମୁଁ ତଳକୁ ଚାହିଁଲି ।

ବାପାଲୋ; କେତେ ବଡ ଖାଲ । ପଥର କଟାଳୀମାନେ ପଥର କାଟି କାଟି ଗଭୀର ଗର୍ତ୍ତ କରିଛନ୍ତି । ମୁଁ ସତକୁ ସତ ଆଗକୁ ଯାଇନି । ଆଉ ପାଦେ ଯାଇଥିଲେ....

ମୁଁ ମର୍ଣ୍ଣିଂୱାକ୍‌ରୁ ଫେରି ଆସିଥିଲି । ଦାଣ୍ଡବାରଣ୍ଡା ରାସ୍ତାରେ ଅନେକ ଲୋକଙ୍କ ଭିଡ । ଭିଡ ଠେଲି ଭିତରକୁ ଯିବାକୁ ଚେଷ୍ଟା କରୁଥିଲି । ଆଖିସାମ୍ନାରେ ଏକ ଯୁବକର ଶବ ଖିନ୍‌ଭିନ୍ ହୋଇ ପଡିଥିଲା ।

ଘେରି ରହିଥିଲେ ଅନେକ ସାଇପଡିଶା, ବାଟୋଇ ଓ ମୋର ପିଲାମାନେ ।

ମୁଁ ମୋ ବାପା ଚେହେରାକୁ ମନେ ପକାଇବାକୁ ଚେଷ୍ଟା କରୁଥିଲି ।

ଗାଁ ଦାଣ୍ଡରେ ଅନେକ ରିକ୍ସା ଠିଆହୋଇଥିଲା । ଦଳେ ହାତରେ ଟିଣ ବାକ୍ସ ଧରି ଗୋଟିଏ ଗୋଟିଏ ରିକ୍ସା ଆବୋରି ନେଉଥିଲେ ।

ମୁଁ ସେମାନଙ୍କୁ ଆବାକାବା ହୋଇ ଚାହୁଁଥିଲି । ମୋ ଶବ୍ଦହୀନ ଯାନକୁ ସାନ ପିଲାମାନେ ଚାହୁଁଥିଲେ । ଲମ୍ବା ନିଶକୁ ମୁଁ ବି ହାତରେ ସାଉଁଳି ଦେଇ ମୋ ଜେଜେ ବାପାଙ୍କ ବୟସ ବୃଦ୍ଧଙ୍କୁ ପଚାରିଲି -

ଜେଜେବାପା ! କୁଆଡେ ଯାଉଛନ୍ତି ?

ଶିଥୁଆ ହାତରେରିକ୍ସା ଉପରକୁ ଟିଣ ବାକ୍ସଟିକୁ ଉଠାଇ ନ ପାରିବାର ଦୁଃଖରେ ହେଉ ବା ଘରେ ବୋହୂ ପିଲାର ଅଲୋଡା ବ୍ୟବହାର ଯୋଗୁଁ ବିରକ୍ତି ଓ ଯନ୍ତ୍ରଣାରେ ଲୋଟା ହୋଇଯାଇଥିବା ଆଖି ଦୁଇଟିକୁ ତବ୍ ତବ୍ କରି ମୋ ଆଡକୁ ମେଲେଇ ଦେଇ କହିଲେ, ହଁରେ ନାତି; ତୋ ସହରକୁ ଯାଉଛି । ତୁ ତ ସହରୀ ହେଇ ଗଲୁ । ମୋତେ କଣ ପଚାରୁଛୁ । ମୁଁ କେତେ ଦିନ ଆଉ ଏଇ ଭିଟାମାଟିର ମୋହରେ ପଡି ରହନ୍ତି । ତୋ ବୁଢାବାପ ଥେଲା...... ସାଙ୍ଗ ହୋ... ନଈ ତୁଠ କାଶତଣ୍ଡିରେ ବୁଲୁଥେଲୁ । ଭାବିଥେଲୁ ଏଇ କାଶତଣ୍ଡି ଫୁଲର ଢେଉ ଭିତରେ ଆମେ ବଞ୍ଚିବୁ ।

ଆଉ ସେ ଦିନ ନାହିଁ । ତୋ ବୁଢାବାପ ଗଲେଣି । ତୁ ତ ଆମକୁ ଛାଡି କେଉଁ ବଡ ସହରରେ ରହିଲୁ । ଆମେ ବଞ୍ଚିଲୁ କି ମଲୁ କିଏ ଆମ ଖବର ରଖୁଛି । ଆଉ କେତେ ଦିନ ହନ୍ତସନ୍ତ ହୋଇ ରହିବୁ । ଆଲୁଅ ନାହିଁ, ପାଣି ନାହିଁ, ରାସ୍ତା ନାହିଁ, ଘର ନାହିଁ, ଖାଇବାକୁ ନାହିଁ । କେବଳ ନାହିଁ ନାହିଁ ଭିତରେ ବଞ୍ଚିବାର କି ମୂଲ୍ୟ ? ସହରକୁ ଚାଲିଲୁ... ସହର...ଟାଉନ୍... । କେତେ ବଡ କୋଠା, ଆଲୁଅ, ପାଣି... । ହଁ, ହଁ, ସହର । ତୋର ଟାଉନ୍ । ତୁ ଯେଉଁଠି ସୁଖରେ ଅଛୁ ।

ବୁଢାବାପାର ଏଇ ସ୍ୱରକୁ ବୁଝିବା ମୋ ପକ୍ଷରେ କଷ୍ଟକର ହୋଇପଡିଲା । ସତେ କଣ ମୋତେ ସେ ପ୍ରଶ୍ନ କରୁଛନ୍ତି ନା ଛିଗୁଲେଇ ହୋଇ ପରିହାସ କରୁଛନ୍ତି ?

ମୁଁ ନିରବରେ ଠିଆ ହୋଇ ପ୍ରଶ୍ନକୁ ଏଡାଇ ଯିବାକୁ ଚାହିଁଲି । ରିକ୍ସା ଉପରେ ଟିଣ ବାକ୍ସ ଲଦା ହେବାରେ ଲାଗିଥିଲା । କିଛି ବୁଢା, କିଛି ଟୋକା, କିଛି ସ୍ତ୍ରୀଲୋକ ନିଜ ନିଜର ସଯତ୍ନ ସାଇତା ଧୋତି, ଜାମା, ଶାଢୀ ପିନ୍ଧି ରିକ୍ସାରେ ଦଳ ଦଳ ହୋଇ ବସିବାରେ ଲାଗିଥିଲେ ।

ମୁଁ ବନ୍ଧ ତଳକୁ ଗୋଡ ବଢାଇଲି । ଆଉ ବି ପାହୁଣ୍ଡ ଗଲେ ମୋ ଘର; ଯେଉଁଠି ମୋ ବୋଉ ମୋତେ ଜନ୍ମ କରି ଗଡାଇ ଦେଇଥିଲା ।

ମୁଁ ଗାଁକୁ ଫେରିଛି । ମୋ ବାପାର ଶ୍ରାଦ୍ଧ ଦିନ ଆଜି । ମୋ ବୋଉ କହିଛି ଆସିବ ବୋଲି । ମୁଁ ସେମାନଙ୍କୁ ପିଣ୍ଡ ଦେବି । ଗାଁ ମାଟିରେ ଖାଇବାକୁ ଦେବି । ମୁଁ ସାଇ ସାଇ ବୁଲି ଡାକୁଛି ।

ଆସ ଦାଦା, କକା, ଜେଜେ ବାପା, ଭାଇନା, ନନା... ଖୁଡି, ଦେଠେଇ, ନନା, ଆଈ,

ନୃତୀମା... ।

ଜଣ ଜଣକ ଘରକୁ ଯାଉଛି... ନେଉଳି ଛାଉଳି ହୋଇ କହୁଛି, ଦାଦା ! ମୋ ବାପାଙ୍କ ଶ୍ରାଦ୍ଧ ଦିନ ଆଜି । ମୁଁ ପିଣ୍ଡ ଦେଉଛି । ଭୂରି ଭୋଜନ ଦେବି ।

ଦାଣ୍ଡ ବାରଣ୍ଡାରେ ନଥ୍ କରି ଥକ୍କା ମାରି ବସି ପଡିଲି ।

କେତେ ଜଣଙ୍କୁ ଡାକିଲୁ ? କିଏ କିଏ ଆସିବେ ? ନାଁ ଗୁଡାକ ମୋତେ କହିଯା । ଜଣ ଜଣକ ନା । ମୁଁ ସମସ୍ତଙ୍କୁ ଜାଣେ । ସମସ୍ତଙ୍କୁ ଚିହ୍ନେ ।

ମୋ ବାପା ମୋତେ ପଚାରୁଛନ୍ତି । ମୁଁ କଣ କହିବି ଏଇ ଗାଁ ମାଟିର ବାସ୍ନା କାହାକୁ ଜାବୋଡି ଧରୁନି ବୋଲି ?

ମୁଁ ଭୋ ଭୋ କାନ୍ଦି ଭୂଇଁରେ ଲୋଟିପଡିଲି । ଦୂରରୁ ଶୁଭୁଥିଲା ହୋ ହୋ, ଘୋ ଘୋ, ଢୋ ଢୋ ଶବ୍ଦ ଯେପରି ଆଟମ୍ ବମ୍ ପୁଣି ଥରେ ଏଇ ପୃଥିବୀରେ ଅନବରତ ଧାରା ଶ୍ରାବଣ ପରି ବର୍ଷି ଚାଲିଛି ।

ମୋପାଦ ତଳୁ ପୃଥିବୀର ମାଟି ଦୋହଲି ଯାଉଛି ।



# ମହନା ମା

ଦିନ ତମାମ ଝାଳନାଳ ହୋଇ ଧାନଖଳାରେ ଧାନବାଡା ଚାଲିଥିଲା । ବଡିଭୋରରୁ ପାଞ୍ଚଟା ଲୋକ । କିନ୍ତୁ ଧାନ କାହିଁ ? ଗଦାଟା ସରିବାକୁ ବସିଲାଣି । ସନାମାଝି ହଠାତ୍ ମୁଣ୍ଡରେ ହାତଦେଇ ନଥିକରି ବସିପଡିଲା । "କିରେ ସନା ! ସେଠି ମୁଣ୍ଡରେ ହାତଦେଇ ବସିଲୁ କିଆଁ । କଣ ମୁଣ୍ଡ ବୁଲାଉଛି କି ?"

ଅଇଁଠୁ ମାଝି ବଡ ପାଟିରେ ପଚାରିଲା ।

ଅଇଁଠୁ ସନାର ଦାଦା । ଦାଦାପୁତୁରା ମିଶି ପରସ୍ପରର ବଦଳିଆ କାମ କରନ୍ତି । ଦି ନି ମୂଲ ଲାଗିଲେ ପେଟପୋଷା । ଅବଶ୍ୟ କିଛି କିଛି ଜମି ବଖରାରେ ଭାଗଚାଷ କରିଛନ୍ତି ।

ଦାଦା ଅଇଁଠୁର ଗୋଟେ ବଳଦକୁ ସନାର ଗୋଟେ ।

ସନାବା ଆଜକୁ ତିନିବର୍ଷ ହେବ, ସନାକୁ ଛାଡି ସେ ପୁରକୁ ଚାଲିଗଲାଣି । ବାପ ଧନେଇ ମାଝି ମଲାବେଳେ ପୁଅକୁ ଚାହିଁ କହିଥିଲା, ସନାରେ ! ମୁଁ ଚାଲିଲି । ମୋ ଦେହକ ମୂଲ ଲାଗି ଗଲା । ଆମେ ମୂଲିଆ ମଣିଷ । ବିଲ ମାଟି ସଙ୍ଗେ ମିଶିବା ଆମ କାମ । ମାଲିକଘର ଜମି ବଖରା କରିଛେ । କର ବଅଁସ ସେମାନେ । ଧରମକରମରେ ସବୁବେଳେ ମନ । ଗୀତା, ଭାଗବତରେ ତାଙ୍କର ଦିନ ଯାଏ । ଦିନେ ହେଲେ ତୁଟିକି ପଦେକଥା କହିନାହାନ୍ତି । ମୁଁ ତ ଜମିକୁ ପଚାଶ ବର୍ଷ ଚାଷ କଲି । ମୋ ଆଗରୁ ମୋ ବୋପା ଅଗାଧୁ ମାଝି ଏହି ଜମିକୁ ଚାଷ କରୁଥିଲା । ତିନିପୁରୁଷ ଧରି ଏଇମିତି ଆମେ ଏ ଜମିକୁ ଚାଷ କରି ଫସଲ ଉତାରୁଛନ୍ତି । କେବେ ବେଇମାନି କରିନି । ବୁଢା ବାବାଜୀ କର ଥିବାବେଳେ ଧାନ ଅମଳବେଳେ ଆସନ୍ତି । ବଡତି କରି କଣ କହିବି । ଏଇ କେଉଟ ଘର ବାରଣ୍ଡାରେ ବସି ପଖାଳ ପୁଞ୍ଜେ ଶୁଖୁଆ ଟିକେ ଦେଲେ ବୁଢାଙ୍କର ତୃପ୍ତି । ବୁଢାଙ୍କ

ପୁଅ ତ ଥିଲେ ଦେବତାରେ । କଥା କଥାକେ ଧରମ କଥା । ଚୁପ୍‌ଚାପ୍ ବସିଥିବେ । ଏବେ ତାଙ୍କ ପୁଅମାନେ କେତେ କେତେ ବଡ ଚାକିରି । ବରଷକୁ ଥରେ ଆସନ୍ତି ଆମ ଏଇ ଗାଁ ମାଟିକୁ । ତାଙ୍କ ଦାନା ଆମେ ଖାଉଛନ୍ତି । ଅସତିଆ ହେବୁନି । ଠକିବୁନି । ପେଟ ଚାଖଣ୍ଡକ ପାଇଁ ଯାଉଳି ତାଓଳ ହେବାଠୁ ଜମିମାଣକ ବଖରା କରି ଚଳିଯିବୁ । ଗୋଟେ ବଳଦକୁ ନିଅଣ୍ଟ । ବଦଳିଆ କରିବୁ ।

ତା ବା ମଲାବେଳେ କହି ଯାଇଥିବା କଥାକୁ ସନା ମନେ ରଖିଛି । ପ୍ରତ୍ୟେକ ବର୍ଷ ଧାନ ଅମଳ କରିବା ବେଳେ ଖାଉନ୍ଦଙ୍କ ଘରେ ଖବର ଦେଇ ଆସେ । ଆସନ୍ତି ପ୍ରତ୍ୟେକ ବରଷ । ଏଇ ଖଳାରେ ବସନ୍ତି ।

ଦାଦା ପାଟି ଶୁଣି ଚିହିଙ୍କି ଉଠିଲା ସନା । ସେଇଠି ବସି ଭୋ ଭୋ କାନ୍ଦି ଗଡି ପକାଇଲା ।

କିରେ କଣ ହେଲା କହୁନୁ କାହିଁକି ସନତ୍ ବାବୁତ ଏଇଠି ବସିଛନ୍ତି । ତୋ କଥା କଣ ବୁଝିବେନି ? ତାଙ୍କୁ ଚାକିରି କଥା କହିବୁ କି ?

ଦାଦାର ସ୍ନେହବୋଳା କଥା ତାର କାନ୍ଦକୁ ବନ୍ଦକରି ପାରିଲା ନାହିଁ । ସେ ସେଇଠି ବସିରହି ମୁଣ୍ଡ କୋଡି କହିବାକୁ ଲାଗିଲା, ଦାଦାଲୋ ! ମୋ ଧାନଗୁଡା କୁଆଡେ ଗଲା । ଦି କାହାଣ କଚଡା ଗଦାରୁ ସରିଲାଣି । ଏତେବେଳକୁ ଧାନଟଦା ହୋଇ ଯାଇଥାନ୍ତା । କିଏ କିମିଆ କରି ମୋ ଧାନକୁ ନେଇଯାଉଛି । ମୁଁ କଣ କରିବି ?

ସନା କଥାଶୁଣି କଚଡା ପିଟୁଥିବା ଲୋକେ ଚିହିଙ୍କି ଉଠିଲେ । ସତେଅବା ବିଜୁଳି ଜୋରରେ ଘର ଉପରେ କଚାଡି ହୋଇ ପଡିଲା ।

ହଁ, ହଁ, ସତେତ । ଧାନ କାହିଁ ? ଏତେବେଳ ଖଳାରୁ ଧାନଗଲା କୁଆଡେ ? ଅତିକମ୍‌ରେ କୋଡିଏ ବସ୍ତା ଧାନ ଗଦା ହୋଇଥାନ୍ତା । ଏକାବେଳେକେ ସମସ୍ତଙ୍କ ପାଟିରୁ ଏଇକଥା ବାହାରିପଡିଲା ।

ଚୁପ୍‌ଚାପ୍ ବହି ଭିତରେ ନିଜକୁ ହଜାଇ ଦେଇଥିବା ସନତ୍‌ବାବୁ ଏତେଗୁଡିଏ ଲୋକଙ୍କର ସମ୍ମିଳିତ ସ୍ୱର ଶୁଣି ମୁଣ୍ଡଟେକି ଚାହିଁଲେ । ସ୍ତୂପାକୃତ ଧାନଗଦାର ଚାରିକଡରେ ଘେରି ରହିଥିବା ଲୋକମାନଙ୍କ ନିକଟକୁ ଯାଇ ଦେଖିଲେ, ଧାନ ପ୍ରାୟ ଦୁଇ ତିନିବସ୍ତା ତଳେ ପଡିଛି ।

କେମିତି ଅନ୍ତର୍ଦ୍ଧାନ ହେଲା ଧାନ । ପବନ ତ ଆଦୌ ବହୁନି । ଧାନ ଉଡିଗଲେ ଜଣାପଡନ୍ତା । ତାଙ୍କର ଯୁକ୍ତିବାଦୀ ମନକୁ ଧାନ ଅନ୍ତର୍ଦ୍ଧାନ ହେବାର ରହସ୍ୟ ବୁଝା ପଡୁନଥିଲା ।

ଧାନପିଟାଳୀ ମାନଙ୍କର କଣ ହେଲା ? କିଏ ନେଲା ? ପାଟିରେ ଆଖପାଖ ଘରୁ ସ୍ତ୍ରୀ ଓ ଝିଅ ଗୁଡିଏ କଣ ହେଉଛି ଦେଖିବାକୁ ସେଠାରେ ଏକାଠି ହୋଇ ଯାଇଥିଲେ । କେଉଟ ସାହିର ସେଇ ଖଳାବାଡି ଚାରିକଡେ ଥିବା ଘରମାନଙ୍କରୁ ସ୍ତ୍ରୀ ଲୋକମାନଙ୍କର ରୁଣ୍ଡ ହେବା ଯୋଗୁଁ ସେହି ସ୍ଥାନଟି ସାପ୍ତାହୀକ ହାଟ ପରି ଜଣାପଡୁଥିଲା । କେହି କେହି ପୁରୁଣା ବୁଢୀ ସ୍ତ୍ରୀ ଲୋକ ଧାନଗଦାକୁ ଚାହିଁ ମନେ ମନେ କଣ ବାଉଳି ଚାଉଳି ହେବାବେଳେ, ଆଉ କେତେକ ସନତ୍‌ବାବୁଙ୍କ ପରି ପ୍ୟାଣ୍ଟସାର୍ଟ ପରିହିତ ମଣିଷଟିକୁ ନିରେଖି ଦେଖୁଥିଲେ । ସାନପିଲାଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲା ସନତ୍‌ବାବୁଙ୍କର ଦୁଇଚକିଆ ସ୍କୁଟର ।

ନିପଟ ମଫସଲ ଭାବେ ଶୀର୍ଷସ୍ଥାନ ମଣ୍ଡନ କରୁଥିବା ସନା ମାଝିର ବିରୁହା ଗାଁଟିର ଭାଗ୍ୟ ଖରସୁଆଁ ନଈର ଭାଗ୍ୟ ସହିତ ବନ୍ଧା ହୋଇଥିଲା । ନଈ ତାର ଗତିପଥ ବଦଳାଇ ଦେଇଥିବା ଯୋଗୁଁ ଗାଁ ଲୋକେ ପାଣିମୁନ୍ଦେ ପାଇଁ ବର୍ଷାଜଳକୁ ଚାତକ ପରି ଅପେକ୍ଷା କରି ରହୁଥିଲେ । ପୋଖରୀ, ଗାଡିଆର ଅପରିଷ୍କାର ପାଣିରେ ଦଳମାଡି ରହିଥିଲା । ଗାଁ ଶେଷରେ ଥିବା ବିଘ୍ନେଶ୍ୱର ମହାଦେବଙ୍କ ମୁଣ୍ଡରେ ସେହି ପୋଖରୀ ଜଳ ଅର୍ପଣ କରୁଥିବା ବ୍ରାହ୍ମଣ ନିଜର ନିତ୍ୟ ନୈମିତ୍ତିକ ଦିନ କାର୍ଯ୍ୟ ସେଇଠି ହିଁ ସମାପ୍ତ କରୁଥିଲା ।

ଗାଁଟି ଥିଲା କୁସଂସ୍କାରର ଏକ ମଡେଲ । ଜମିଦାରୀ ଅତ୍ୟାଚାରର ନିଛକ ରୂପ ଅମରାଡାଳ ମାଡିଯିବା ପରି ମାଡି ଯାଇଥିଲା । ତାର ଚେର କେଉଁଠି ଖୋଜି ପାଇବା ଥିଲା ମୁସ୍କିଲ ।

ଖଳାବାଡିରୁ ଧାନ କେଉଁଆଡେ ଅନ୍ତର୍ଦ୍ଧାନ ହେଲା ତାକୁ ବିଶ୍ୱାସ କରିବାରେ କାହାରି କିଛି ଅସୁବିଧା ହେଉନଥିଲା ।

ଆଖି କୋରଡରେ ପଶିଯାଇଥିବା, ଚମ ଧୁଡୁଧୁଡୁ ହେଉଥିବା ବୁଢୀଟିଏ ଆଗକୁ ଆସି ଭୋ ଭୋ ରଡି ପକାଉଥିବା ସନାକୁ କହିଲା, ରେ ସନା ! କାନ୍ଦିଲେ କଣ ହେବ । ତୋ ଧାନକୁ କିମିଆ କରି ନେଇଛି । ଅଳପେଇଶ କଣ ଜାଣେ ତା ବୋପା ଏଠି ଅଛି ବୋଲି ?

ଯା, ଯା, ଶୁଖୁଆ ମେଞ୍ଚେ, ପାଣି ଡାଳଟେ ଓ ଦୁଦୁରାଫୁଲ ଦିଟା ଆଣ । ମହାଦେବଙ୍କ ମୁଣ୍ଡ ପାଖରୁ ବେଲପତ୍ର ପାଞ୍ଚଟା ଆଣିବାକୁ ଭୁଲିବୁନି । ମୁଁ ଦେଖିବି ସେ ଅଳପେଇଶା କିମିତି ତୋ ଧାନକୁ ନେଇଯିବ ?

ବୁଢୀର ଏତିକି କଥାରେ ଜୀବନ ପାଇଲା ସନା । ଧଡପଡ ହୋଇ ଘର ଆଡେ ଦୌଡିଲା ।

ଚାହୁଁ ଚାହୁଁ କଥାଟା ରାଷ୍ଟ୍ର ହୋଇଗଲା ଗାଁଟା ସାରା । ପାଖ ଗାଁ ହାଟକୁ ଯାଉଥିବା ଦୋକାନୀମାନେ ସେଇଠି ଠା ହୋଇ ଅଟକି ଯାଉଥିଲେ । ସମସ୍ତଙ୍କ ଆଖି ଧାନ ଉପରୁ ଯାଇଁ ବୁଢୀ ଉପରେ କେନ୍ଦ୍ରିତ ହେଉଥିଲା । ମଇଳା ଲୁଗାଟା କେତେ ସିଆଁ ହୋଇ ଅଣ୍ଟାରୁ ମୁଣ୍ଡ ପର୍ଯ୍ୟନ୍ତ ଗୁଡାହୋଇ ଚମ ଧୁଡୁଧୁଡୁ ଦେହଟିକୁ ଆବୋରି ବସିଥିଲା । ଅଳରାହୋଇ ବିଛି ପଡିଥିବା ଧଳାବାଳ ଗୁଡିକ ବୁଢିଆଣୀର ବିଚିତ୍ର ଜାଲର ଭ୍ରମ ସୃଷ୍ଟି କରୁଥିଲା ।

ବୁଢୀ ସେଇ ଗାଁରେ ଗୁଣିଟୁଣି କରେ ବୋଲି ସମସ୍ତେ ଜାଣିଥିଲେ । ମହନା ମାର ଯୁବାନ ବୟସ ବେଳେ ଭେଣ୍ଡିଆ ଘଇତା ହଇଜାରେ ମରିଯାଇଥିଲା ଓ ତାର ଅଢ଼ କେଇ ବରଷର ପୁଅ ମହନା ତା ପାଖରେ ବେଶୀଦିନ ରହିପାରି ନଥିଲା । ସେ ବାପ ଯାଇଥିବା ରାସ୍ତାରେ ବାଟ କାଟିଥିଲା । ମହନା ମାର ମନ ସେଇଦିନଠୁ ଏକ ବିଚିତ୍ର ଭାବନାର ଶିକାର ହୋଇଥିଲା । ବିଘ୍ନେଶ୍ୱର ମନ୍ଦିର ପାଖରେ ଥିବା ଶ୍ମଶାନ ନିକଟରେ ଯେଉଁଠି ଦିନେ ମହନାବାପର ଚିତା ଜଳିଥିଲା, ଖଣ୍ଡ ଖଣ୍ଡ ହାଡ ଗଦା ହୋଇ ପଡିଥିଲା, ରାତିଦିନ ମହନା ମା ତାର ଯୁବା ବୟସରୁ ସେଇଠି ଡେରା ପକାଇ ସମୟ ସମୟରେ ବିକଟ ଚିତ୍କାର କରୁଥିଲା ।

ରାତିରେ କେହି କେହି ତାକୁ ସେଠାରେ ଇଙ୍ଗଳାହୋଇ ମଣିଷ ମୁଣ୍ଡ ଧରି ନାଚୁଥିବାର

ଦେଖୁଥିଲେ ।

ମହନା ବାପ ମଲା ପରଠାରୁ ବିରୁହା ଗାଁରେ ଆଉ କେବେ ହଇଚା ହେବାର ଶୁଣାଯାଏ ନାହିଁ ।

ଲୋକମୁଖରେ ମହନା ମା ଦେବୀ ପାଲଟି ଯାଇଥିଲା ଏବଂ ଗାଁ ବୁଆ ଭୁଆସୁଣୀ ମାନଙ୍କର ରକ୍ଷା କବଚ ସାଜିଥିଲା ।

ମହନା ମାର ଖଳାବାଡିରେ ହଠାତ୍ ଆବିର୍ଭାବ ସନା ପରିବାର ପାଇଁ ଗରସାର ସୂତ୍ର ପାଲଟି ଯାଇଥିଲା । ମହନା ମା ଧାନଖଳା ଚାରିକଡରେ ଲୁହାର ଗାରକାଟି ଚାରିକଡୁଯିବା ଆସିବାର ରାସ୍ତା ବନ୍ଦ କରିଦେଇ ଧ୍ୟାନସ୍ଥ ମୁଦ୍ରାରେ ବସି ରହିଥିଲା ।

ଭୂତପ୍ରେତ, ଗୁଣି ଗାରେଡିରେ ବିଶ୍ୱାସ କରୁନଥିବା ସନତ୍‌ଙ୍କ ଉତ୍ସୁକ ଆଖି ଦୁଇଟି ସେହି ବୁଢୀ ଓ ତାର କାର୍ଯ୍ୟକଳାପ ଉପରେ ନିବଦ୍ଧ ହୋଇଥିଲା । ତାଙ୍କ ମନରେ ଭୁବନେଶ୍ୱରଠାରେ ତାଙ୍କ ପଡୋଶୀଙ୍କ ଘର କଥା ମନେ ପଡୁଥିଲା । ପଡୋଶୀ ସାମନ୍ତବାବୁଙ୍କ ପତ୍ନୀ ଦେହରେ କେହି ପ୍ରେତ ପ୍ରବେଶ କରିଛି ଏବଂ ସେହି ପ୍ରେତକୁ ବାହାର କରିବା ପାଇଁ ସାମନ୍ତବାବୁ ଗୁଣିଆର ସହାୟତା ଲୋଡିବା କଥା ସେ ଶୁଣିଥିଲେ ବି ବିଶ୍ୱାସ କରି ପାରିନଥିଲେ । ହଠାତ୍ ଏଇ ନିପଟ ମଫସଲ ଗାଁରେ କରି ପାରିନଥିଲେ । ହଠାତ୍ ଏଇ ନିପଟ ମଫସଲ ଗାଁରେ ଧାନଖଳାରୁ ଧାନ ଅନ୍ତର୍ଦ୍ଧାନ ଏବଂ ମହନା ମାର ଆଗମନ ଓ ମନ୍ତ୍ରଯନ୍ତ୍ର ଆରମ୍ଭ କରିବା ତାଙ୍କ ବିଜ୍ଞାନ ବିଶ୍ୱାସୀ ମନ ଉପରେ ସୃଷ୍ଟି କରୁଥିଲା ଏକ ଘୂର୍ଣ୍ଣିବାତ୍ୟା ।

ସାମନାରେ ଥୁଆ ହୋଇଥିଲା ମଣିଷ ଖପୁରୀ । ମହନା ମା ବିକଟାଳ ଶବ୍ଦ କରି ଚିତ୍କାର କଲା, ରେ ରେ ଅଳପେଇସା ଘରବୁଡା, ଆଣ୍ଡକୁଡା, ବେହିପ୍ରୁଅ, ନିକମା ! ତୁ ଯେଉଁଠି ଯେଉଁଠି ଅଛୁ , ତୁ ଯେଉଁଠାରେ ଲୁଚିଛୁ ସେହି ସାନ ଅତଳ, ବିତଳ, ସୁତଳ, ତଳାତଳ, ରସାତଳ, ପାତାଳ ହେଉନା କାହିଁକି କିମ୍ବା ଭୂ, ଭୁବ, ସ୍ୱର୍ଗ, ମହ, ଜନ, ତପ, ସତ୍ୟ ହୋଇଥିଲେ ବି ତୋତେ ଏଇ ଜାଗାକୁ ଆସିବାକୁ ହେବ ଏବଂ ମୋ କଥାକୁ ଘେନାକରି କାମ କରିବାକୁ ପଡିବ । ନଚେତ୍ ଜାଣି ରଖୁଥାରେ ଘରବୁଡା, ଅଳପେଇସା ତୋ ଆଣ୍ଠୁ ଗଣ୍ଠିକୁ ଭାଙ୍ଗି ଚୁରମାର କରିଦେବି । ତୁ ଭାବିଛୁ ତୁ ଏକା ସିଆଣିଆ, ତୋତେ କାବୁ କରିବାକୁ ମୋତେ ଦଣ୍ଡଟିଏ ସମୟ ଲାଗିବ ନାହିଁ । ଭଲ ଦଶା ଅଛି, ତେବେ ଓହ୍ଲାଇଆ, ଜଲଦି ଓହ୍ଲାଇ ଆସି ଏଇ ଗରିବ ଟୋକାର କଳାଧାନକୁ ଆଣି ଫେରେଇଦେ । ନଚେତ୍ ତୋତେ ଜିଅନ୍ତା ଧାନ ସହିତ ପୋତି ପକାଇବି । ଦେ, ଦେ, ଜଲଦି ଦେ... ଜଲଦି ଦେ ।

ବଡ ପାଟିର ଚିତ୍କାରରେ ଗାଁ ଖଣ୍ଡକ ଘଡଘଡି ଶବ୍ଦ ପରି କମ୍ପି ଉଠିଲା । ପିମ୍ପୁଡି ଦଳ ପରି ମେଳା ବାନ୍ଧିଥିବା ସାନ ସାନ ପିଲାଗୁଡିକ ଭୟରେ ଜଡସଡ ହୋଇ ଦୂରରେ ମା, ବୁଢୀମାନଙ୍କ ପଣତକାନି ଭିତରେ ପଶିଯାଇ ଲୁଚିଯିବାର ଯତ୍ନ କରୁଥିଲେ । ଆଗରୁ ଖଳାବାଡିରେ ଭର୍ତ୍ତି ହୋଇଥିବା ଲୋକେ ଫୁଟବଲ ପଡିଆରେ ଖେଳ ଆରମ୍ଭ ହେବା ପରେ ବାଉଣ୍ଡାରି ବାହାରକୁ ଚାଲିଯିବା ପରି ଦୂରେ ରହି କଣ ଘଟିବାକୁ ଯାଉଛି, ତାହା ଲକ୍ଷ୍ୟ କରୁଥିଲେ । ରାସ୍ତାରେ

ଲୋକମାନଙ୍କର ଥାଟପଟାଳି ଭାଙ୍ଗୁଥିଲା । ଅନାଗତ ଭୟର ଛାଇ ସବୁରି ମୁହଁରେ ବାରିହୋଇ ପଡୁଥିଲା ।

ସନତ୍ ହାତରେ ଥିବା ବହିର ପୃଷ୍ଠା ମଲାଟ ସହିତ ମିଶି ଯାଇଥିଲା । ସେ ଧାନଖଳାର ଏକଣାକୋଣରେ ଛଣଗଦା ଉପରେ ପରା ହୋଇଥିବା ଅଖାକାଣ୍ଡି ଉପରେ ବସି ମହନା ମାର ଉଚ୍ଚାଟିଆ ସ୍ୱରକୁ ଶୁଣୁଥିଲେ ଏବଂ ଶ୍ରୀରାମକୃଷ୍ଣଙ୍କର ଭୈରବୀ ବ୍ରାହ୍ମଣୀଠାରୁ ତନ୍ତ୍ରଶିକ୍ଷାର ଅଧ୍ୟାୟଟିକୁ ମନେ ପକାଇବାକୁ ଚେଷ୍ଟା କରୁଥିଲେ । ତନ୍ତ୍ର, ମନ୍ତ୍ର, ମାରଣା, ମୋହନ ଓ ଉଚ୍ଚାଟନ ଇତ୍ୟାଦିରେ ବିଶ୍ୱାସ ରଖିନଥିବା ତାଙ୍କର ମନ ଶ୍ରୀ ରାମକୃଷ୍ଣଙ୍କ ପାଦତଳେ କିନ୍ତୁ ସମର୍ପିତ ହୋଇଥିଲା । ଶ୍ରୀ ରାମକୃଷ୍ଣଙ୍କୁ ଗ୍ରହଣ କରିବାରେ ତାଙ୍କର ଆଦୌ ଦ୍ୱିଧା ନଥିଲା ।

ମହନା ମା ନୀରବରେ ଠିଆ ହୋଇ ଉପରକୁ ଚାହିଁଲା । ଖୁବ୍ ଜୋରରେ ଚିତ୍କାର କରୁନଥିଲା । ଆକାଶକୁ ଚାହିଁ ରହି ହାତକୁ ଇତସ୍ତତ ଫିଙ୍ଗିବାକୁ ଲାଗିଥିଲା । ଦଶଦିଗକୁ ଅନିର୍ଦ୍ଦିଷ୍ଟ ଭାବେ କିଛିକ୍ଷଣ ଫିଙ୍ଗିବା ପରେ ମଣିଷ ଖପୁରୀରୁ ପାଣିନେଇ ଚାରିକଡରେ ଛିଞ୍ଚିଲା ଏବଂ ଛାଞ୍ଚୁଣୀରେ ଭୂଇଁକୁ ଢୋ ଢୋ କରି ପିଟିବାକୁ ଆରମ୍ଭ କରିଦେଲା । ହଠାତ୍ ଉତ୍ତରକୋଣରୁ ସୁ ସୁ ହୋଇ କଣ ଗୋଟେ ଶବ୍ଦ ଶୁଣାଗଲା ଏବଂ ଧୂଆଁଳିଆର ଏକ ବିରାଟ ରେଖା ଧଳା ପାଇପ୍ ସଦୃଶ ଦାନଗଦା ଉପରେ ଲାଗିଗଲା । ସମଗ୍ର ଖଳାଟା କେବଳ ଧୂଆଁ । ସୋ ସୋ ଶବ୍ଦ, ଧୂଆଁଳିଆ ଆକାଶ ଭିତରେ କେହି କାହାରିକୁ ଦେଖି ପାରୁ ନଥିଲେ । ଝରଝର ହୋଇ ଅନବରତ ବର୍ଷା ପଡିବା ପରି ଦାନଗଦା ଉପରେ କଣ ଗୁଡେ ପଡୁଥିବାର ଶବ୍ଦ ।

ସନତ୍‌ଙ୍କୁ କିଛି ଦେଖା ଯାଉନଥିଲା । କେବଳ ଅସ୍ପଷ୍ଟ ଏକ ଛାୟାମୂର୍ତ୍ତି ଖଳାର ଏ ମୁଣ୍ଡରୁ ସେ ମୁଣ୍ଡକୁ ଡେଇଁ ଡେଇଁ ଯାଉଥିବାର ଏବଂ ଝରଝର ଶବ୍ଦ ହେଉଥିବାର ସେ ଶୁଣି ପାରୁଥିଲେ । ଏପରି କେତେ ସମୟ ଧରି ଚାଲିଲା, ତାହା ଜାଣିବା ଆଦୌ ସମ୍ଭବ ନଥିଲା । ଘନ କୁହୁଡି ମଧ୍ୟରେ ଟପ୍ ଟପ୍ ଶବ୍ଦ ବ୍ୟତୀତ ଆଉ କିଛି ଦେଖାନଯିବା ଓ ଶୁଣା ନଯିବା ପରି ସେ ଅଂଚଳଟି କିଛିକ୍ଷଣ ପାଇଁ ବାହାର ଜଗତରୁ ସଂପୂର୍ଣ୍ଣ ପୃଥକ୍ ହୋଇ ପଡିଥିଲା ।

ହଠାତ୍ ଚାରିଆଡେ ସୂର୍ଯ୍ୟଙ୍କର ଆଲୋକ ପଡିଯାଇ ଫରଚା ଦେଖାଗଲା । ଜମା ହୋଇଥିବା ଲୋକେ ଚାରିକଡୁ ଖଳାପାଦ ପାଖରେ ଜମାହୋଇ ସ୍ତୂପୀକୃତ ଧାନକୁ ଦେଖିବାରେ ଲାଗିଥିଲେ । ସନା ଧାନ ପିଟୁଥିବା ଲୋକଙ୍କୁ ଡାକ ଛାଡୁଥିଲା, ଲୋ ଦାଦା ! ବେଳ ଉଣ୍ଠୁର ହେଲାଣି । ବାବୁ ପରା ଧାନ ମାପ କରି ଫେରିବେ । ଆସ ବେଇଗି । କାମ ସାରିବା ।

ସନତ୍ ଚାରିକଡକୁ ଦୃଷ୍ଟି ପକାଇବାକୁ ଆଗ୍ରହ କରିଥିଲେ । ତାଙ୍କ ମନ ଭିତରେ ଦେବାସୁର ଯୁଦ୍ଧର ଅନ୍ତର୍ଦ୍ୱନ୍ଦ୍ୱ ତାଙ୍କୁ ବିବ୍ରତ କରୁଥିଲେ ବି ମହନା ମାର ରୂପ ଆଖି ଡୋଳାରେ ଚିତ୍ରିତ ହୋଇ ଯାଇଥିଲା ।



# ଦିଗ୍‌ବଳୟ ଏପାରେ

ବସଂତରାୟ ନିଜ ପକେଟ୍‌ରୁ ରୁମାଲ୍‌ଟା ବାହାରକରି ଦେହରୁ ବୋହୁଥିବା ଗମ୍‌ଗମ୍ ଝାଳକୁ ପୋଛିବାରେ ଲାଗିଥିଲା । ବର୍ଷା ଓ କୋହଲା ପାଗ ହେବା ସତ୍ତ୍ୱେ ସହରରେ ବୁଲୁଥିବା ଲୋକମାନଙ୍କ ଦେହରେ ଜଡେଇ ହୋଇ ରହିଥିବା ଜ୍ୟାକେଟ୍ ଓ ଶାଲ୍‌ରୁ ସେ ସହରରେ ଥଣ୍ଡା ପଡିଥିବାର ଅନୁମାନ କରି ପାରିଥିଲା । ସତରେ କଣ ଏତେ ଥଣ୍ଡା । ଲୋକମାନେ କେବଳ ଦେଖେଇ ହେବାପାଇଁ ସ୍ୱେଟର ଓ ଶାଲ୍ ଘୋଡେଇ ହୋଇ ନାହାନ୍ତିତ ! ସେ ଦିନସାରା କାର୍‌ରେ ଏ ମୁଣ୍ଡରୁ ସେ ମୁଣ୍ଡ ହୋଇ ବୁଲୁଛି । ଦେହରୁ କେବଳ ଝାଳ ବର୍ଷାପାଣିର ଧାର ବୋହିବାପରି ଝରି ପଡୁଛି । ତାକୁ ଥଣ୍ଡା ଅନୁଭବ ଆଦୌ ହେଉନି କିପରି ? କଣ ସେ ରକ୍ତହୀନତା ରୋଗର ଶୀକାର ହେଲାଣି କି ? ଡାକ୍ତର ତାକୁ ସେ ଦିନ ଏକ୍‌ଜାମିନ୍ କରି କହିଲେ, ତାର ହେଲ୍‌ଥ ସବୁ ଠିକ୍ ଠାକ୍। ଭୟ କରିବାର ଆଦୌ କୌଣସି କାରଣ ନାହିଁ । ଏ ପରିକି ରକ୍ତ ଚାପ ବୃଦ୍ଧି ହେବାର ଆଦୌ ସମ୍ଭାବନା ନାହିଁ । କେବେ କେବେ ଟେନ୍‌ସନ୍ ହେଲେ ଦେହଟା ଥରିପାରେ, ମୁଣ୍ଡ ବୁଲାଇପାରେ ବା ଅଜୀର୍ଣ୍ଣ ଧରି ପାରେ । କିନ୍ତୁ ସେମିତି କିଛି ବିଶେଷ ରୋଗ ଗ୍ରସ୍ତ ହେବାର ସମ୍ଭାବନା ନାହିଁ ।

ବସଂତରାୟ ସବୁବେଳେ ନିଜ ଦେହପ୍ରତି ସଚେତନ । ମର୍ଣ୍ଣିଂୱାକ୍ କଲାବେଳେ ସେ ଦେହ ହାତରେ ସକାଳୁଆ ପବନ ଓ ସୂର୍ଯ୍ୟଙ୍କର ସକାଳର ଲୋହିତ କିରଣ ଲାଗିବା ପାଇଁ ହ୍ୟାପ୍ ପ୍ୟାଣ୍ଟ ଓ ହ୍ୟାପ୍ ସାର୍ଟ ବ୍ୟବହାର କରେ । ତାର ଖାଇବାରେ ସେ ଖୁବ୍ ସଂଯତ । ଦେହଟିକୁ ଠିକ୍‌ଠାକ୍

ରଖିବା ପାଇଁ ସ୍ତ୍ରୀଙ୍କର ଯତ୍ନ ବହୁତବେଶି । କେବେ କେମିତି ଯଦି ଅଧିକା ଟିକିଏ ଖାଇ ଦିଅନ୍ତି ବା ତେଲଘିଅ ଜିନିଷ ପାଟି ସୁଆଦ କରିବାକୁ ବ୍ୟବହାର କରନ୍ତି, ତେବେ ସ୍ତ୍ରୀଙ୍କ ରାଗ ଦେଖିବ କିଏ । ବସଂତରାୟ ସେ ବିଷୟରେ ସଚେତନ । ଏପରି କି ଚାରେ ଦୁଧ ବା ଚିନି ନାହିଁ । ବସଂତରାୟର ପ୍ରତ୍ୟେକ କାର୍ଯ୍ୟ ସହିତ ତାର ସ୍ତ୍ରୀ ଏକ ଓ ଅଭିନ୍ନ । ସୁଖୀ ଦମ୍ପତି । ସହରର ଆଭିଜାତ୍ୟ ସମ୍ପନ୍ନ ବ୍ୟକ୍ତିତ୍ୱ । କ୍ଷମତା, ଯଶ ଓ ଧନର ପାହାଚ ଉପରେ ବସି ବସଂତରାୟ ତଳକୁ ଚାହିଁବା ବେଳେ ଛୋଟ ଛୋଟ କୀଟ ପତଙ୍ଗ ମାନଙ୍କ ପ୍ରତି ତାର ଦୟା ଆସେ । ତାର ଅତୀତ କେବେ କେବେ ତାକୁ ଦେଖି ହସେ । କେବେ ଆଖିରୁ ଲୁହ ଗଡାଏ । କିନ୍ତୁ ବସଂତ ରାୟ ବଞ୍ଚିବା ପାଇଁ ସକାଳୁ ମର୍ଣ୍ଣିଓ୍ୱାକ୍ କରେ, ଦଣ୍ଡ ବୈଠକ ମାରେ, ଯୋଗାସନ କରେ । କାରଣ ସେ ବଞ୍ଚିବା ପାଇଁ ଚାହେଁ ।

X X X X

ବସଂତରାୟ ଏଇ ସହରର ଏକ ଚରିତ୍ର । ଯେଉଁ ଚରିତ୍ର ସଂପର୍କରେ ଆଲୋଚନା ବା ସମାଲୋଚନା କରାଯାଇ ପାରେ । ଯେଉଁ ଚରିତ୍ରକୁ ନେଇ ଗପ ବା ଉପନ୍ୟାସ ଲେଖାଯାଇ ପାରେ । ହୁଏତ କେହି ଲେଖିଥିବ । ଯଦି କେହି ଏ ଚରିତ୍ରଟିକୁ ଅନୁଧ୍ୟାନ କରେ, ତେବେ ଅନେକ ଅକୁହା କାହାଣୀ ଜେଜେମା ଗପପେଡିରୁ ବାହାରିବା ପରି ବାହାରି ଆସିବ । ସେଇ ଅକୁହା କାହାଣୀ ପେଟରା ଭିତରୁ ଏଇମିତି ଗୋଟେ କାହାଣୀ ନିଜେ ବସଂତରାୟ ବାହାର କରି ଲୋକମାନଙ୍କ ପାଖରେ ଥୋଇଛି । ବୋଧହୁଏ ସେ ତା ଗପପେଡିରୁ ଏଇ ଗପଟିକୁ ବାହାର କରି ନଥାନ୍ତା ଯଦି ତାକୁ ରାସ୍ତାକଡରେ ଟୋକାଗୁଡାକ ଛିଗୁଲେଇ ନଥାନ୍ତେ । କାହିଁକି ସେହି ଟୋକାଗୁଡାକ ତାକୁ ଛିଗୁଲେଇଲେ କେଜାଣି ହଠାତ୍ ସେ ରାସ୍ତାଉପରେଠିଆହୋଇ ରାଗିଗଲା, ନିଜ ବାଳଗୁଡିକୁ ଖୁବ୍ ଜୋର୍‌ରେ ଟାଣିଲା ଏବଂ ଭୋ ଭୋ ହୋଇ କାନ୍ଦି ପକାଇଲା । ସେହି କାନ୍ଦୁଥିବା ବେଳେ, ମୋ ବିଷୟରେ କିଛି ନଜାଣି କେବଳ ଛିଗୁଲେଉଛ, ଗାଳିଦେଉଛ ବୋଲି ଚିତ୍କାର କରୁଥିଲା । ମୁଁ ତୁମକୁ ଆଜି ମୋ ଜୀବନ କାହାଣୀ ଶୁଣାଇବି । ମୋ ଜୀବନ ଦିନ୍ ଭାଲିଦିନ୍‌ର ଜୀବନ । ଜାଣିଛ ତୁମେ ଦିନ୍ ଭାଲିଦିନ୍‌କୁ । ଏଇ ରାସ୍ତାରେ ବୁଲୁଛନ୍ତି ଅନେକ ଦିନ୍ ଭାଲିଦିନ୍ । ଭୋକିଲା -

ଭାଲିଦିନ୍ ଥିଲାନିତ୍ୟାନ୍ତ ଗରିବ । ତାର ବିଧବା ଭଉଣୀ ଓ ତାର ପିଲାମାନେ ଦିନ୍ ଉପରେ ଥିଲେ ନିର୍ଭରଶୀଳ । ସବୁଦିନେ ଖାଇବା ଥିଲା ତାଙ୍କ ପାଇଁ ସ୍ୱପ୍ନ । ଖାଲିପେଟରେ ସଙ୍କୁଚିଯାଇ ଶୋଇ ପଡିଥିବା ପିଲାମାନେ ସକାଳୁ ଉଠି କାନ୍ଦିବାକୁ ଲାଗିଲେ । ବୁନ୍ଦା ବୁନ୍ଦା ଲୁହ ତା ହୃଦୟକୁ ବିଦୀର୍ଣ୍ଣ କଲା । କିନ୍ତୁ କଣ କରି ପାରିବ ସେ । କଣ ଖାଇବାକୁ ଦେଇ ପାରିବ ? କପର୍ଦ୍ଦକ ଶୂନ୍ୟ । ବାହାରିଲା କାମ ଉଦ୍ଦେଶ୍ୟରେ । ରାସ୍ତାରେ ଅନେକ ଦୋକାନ । ଅନେକ ଫ୍ୟାକ୍ଟେରୀ, ଗୋଟିଏ ରୁଟି ଫ୍ୟାକ୍ଟେରୀରେ ସେକା ହୋଇ ଥାକମରାହୋଇ ଥୁଆ ହୋଇଛି ରୁଟି । ଧିରେ ଦୋକାନ ଭିତରେ ପଶିଲା ଦିନ୍ । ପାଉରୁଟି ଖଣ୍ଡିଏ ଉଠାଇ ଚାଲିଆସିବା ବେଳେ ଧରାପଡି ଚୋରୀ

ଅପରାଧରେ ଆରେଷ୍ଟ ହୋଇ ଦଣ୍ଡ ପାଇଲା ଜାହାଜରେ ବୋହିବା କାମ । ବଡ ଅକଥନୀୟ ହୋଇ ପଡିଲା ତାର ଜୀବନ । ଦିନକୁ ଦିନ ସହିବା କଷ୍ଟସାଧ ହେଲା । ଭାବିଲା ପଳାଇଯିବ । ଚେଷ୍ଟା ମଧ କଲା ମାତ୍ର ପୁଣି ଧରାପଡିଲା । ଏଇମିତି ବାରମ୍ବାର ଜେଲ । ଦୀର୍ଘ କୋଡିଏ ବର୍ଷ ପରେ ତାକୁ ମୁକ୍ତି ମିଳିଲା ଜେଲ୍‌ଦଣ୍ଡରୁ । ଏତେଦିନର ଜେଲଜୀବନ ଯୋଗୁ ସେ ହୋଇଥିଲା ଦୁର୍ଦ୍ଧାନ୍ତ ଅପରାଧି । ଲୋକେ ଦେଖିବା ମାତ୍ରେ ଦୂରଦୂର କଲେ । ତା ମୁହଁ ଉପରେ ଘରର ଦରଜା ଧଡାସ୍ କରି ବନ୍ଦ ହୋଇଯାଉଥିଲା ।

ଭୋକ, କ୍ଳାନ୍ତ ଓ ଅବସନ୍ନ ଦେହରେ ଦିନ୍ ବିସପ୍‌ଙ୍କ ବାରଣ୍ଡାରେ ଶୋଇରହି ନିଶ୍ଚିତ ମୃତ୍ୟୁକୁ ଅପେକ୍ଷା କରିବାକୁ ଲାଗିଲା । ବିସପ୍ ଦୟାଳୁ ଥିଲେ । ସେ ତାକୁ ନିଜ ଘରେ ଆଶ୍ରୟ ଦେଲେ । ବିସପ୍ ଦିନ୍‌ର ଅତୀତ ସଂପର୍କରେ ଥିଲେ ଅବଗତ । ଦିନକୁ ଭଲ ଖାଇବାକୁ ଦେଇ ନରମ ବିଛଣାରେ ଶୁଆଇଲେ । କିନ୍ତୁ ଭୁଲି ପାରୁନଥିଲା ପୂର୍ବସ୍ମୃତି ଚୁପ୍‌ଚାପ୍ ନିଦରୁ ଉଠି ମହମବତୀ ଦୁଇଟି ବ୍ୟାଗଭିତରେ ପୂରାଇ ବାହାରି ଚାଲିଗଲା । କିନ୍ତୁ ଭାଗ୍ୟର ବିଡମ୍ବନା । ଧରା ପଡିଲା ଦିନ୍ । ମହମବତୀ ସହିତ ତାକୁ ବିସପ୍‌ଙ୍କ ସମ୍ମୁଖକୁ ଅଣାଗଲା । ବିସପ୍ ଦିନ୍ ଚକ୍ଷୁରେ ନିଷ୍ପାପ ଶିଶୁର ଭାଷା ପଢୁଥିଲେ । ତାକୁ କୌଣସି ଅପରାଧରେ ଦୋଷୀ ବୋଲି ନକହି ବିସପ୍ କହିଲେ, ମୁଁ ସେହି ମହମବତୀ ଦୁଇଟିକୁ ଦିନ୍‌କୁ ଦେଇଛି । ସେ ଗରିବ, ସେଇଥିପାଇଁ । ଦିନ୍ ଦେଖିଲା ବିସପ୍‌ଙ୍କ ମୁହଁରେ ସେହି ପ୍ରଶାନ୍ତି ହସ । ସେ ନିଜ ଭିତରେ ଏକ ଅପୂର୍ବ ପୁଲକ ଓ ମାଦକତା ଅନୁଭବ କଲା । ସମୟକ୍ରମେ ଦିନ୍ ହେଲା ଜଣେ ବିଶିଷ୍ଟ ବ୍ୟକ୍ତି । ସେହି ସହରର ମେୟର । ଗରିବ ପିଲାମାନେ ହେଲେ ତାର ଦେବତା । ସମସ୍ତଙ୍କ ପାଇଁ ତାର ଧନ ଥିଲା ଉନ୍ମୁକ୍ତ ।

ଦିନ୍ ଭାଲିଦିନ୍ ଜୀବନରେ ଏହି ପରିବର୍ତ୍ତନ, ସମସ୍ତଙ୍କ ଜୀବନରେ ଘଟେ । ଏତକ କହି ଚୁପ୍ ରହିଲା ବସଂତରାୟ । ପୁଣି ଥରେ ହୋ ହୋ ହସିଉଠିଲା ।

ତୁମେ କଣ ଭାବୁଛ କି ମୋ ଜୀବନରେ ସେମିତି କିଛି ଘଟିଛି ? ତାହା ଯଦି ତୁମେ ଭାବୁଥାଅ, ନିଶ୍ଚୟ ଭୁଲ୍ କରୁଛ । ମୁଁ ଦିନ୍ ଭାଲିଦିନ୍ ନୁହେଁ ଯେ ଖଣ୍ଡେ ରୁଟି ଖାଇବା ପାଇଁ ଜେଲ୍ ଯିବି । ମୋ ପେଟରେ ଭୋକ ଅଛି । ମୋ ଭୋକ ମେଣ୍ଟାଇବା ପାଇଁ ମୁଁ କେତେ ପରିଶ୍ରମ କରିଛି । ମୋ ଦେହର ରକ୍ତ ଧାରଧାର ହୋଇ ଝାଳ ଆକାରରେ ବାହାରିଯାଇଛି । ମୁଁ ଜାଣେ କେତେ ରକ୍ତ ମୋ ଦେହରେ । ହଠାତ୍ ମୋ ବାପା ମୋତେ ଏକାକୀ କରି ଚାଲିଗଲା । ନଯାଇ କଣ କରିଥାନ୍ତା । କେତେ ଖଟିଥାନ୍ତା । ଦିନରାତି ଖଟଖଟି ଖାଇବା ବିନା ରୋଗା ପାଲଟି ଗଲା । ହଠାତ୍ ଜ୍ୱର । ଔଷଧ ନାହିଁ । ସବୁ ଶେଷ ।

କେତେ ଦିନ ପେଟ ଭୋକ ଓ ଦେହ ଭୋକକୁ ମାରି ରହିଥାନ୍ତା ମାଆମୋର । କିବା ମମତା ତା ଆଗରେ । ମୁଁ ହେଲି ମ୍ୟୁନିସ୍‌ପାଲିଟି ନର୍ଦ୍ଦମାକଡର ବାସିନ୍ଦା । ଅସହାୟ । ସେହି ରାସ୍ତାକଡ ଅବର୍ଜ୍ଜନାରୁ ବସଂତରାୟ ଜନ୍ମ ନେଲା ।

ଅବର୍ଜ୍ଜନାଟାଏ । ବାଷ୍ଟାର୍ଡ । ଅନେକ ବିଶେଷଣ । ରାସ୍ତାକଡର ଫୁଟ୍‌ପାଥିରୁ ଅଇଁଠା

ପାଉରୁଟିର ଖଣ୍ଡ, ଫିଙ୍ଗା ହୋଇଥିବା ଝଲି ପତ୍ରରୁ ସଂଗ୍ରହ ଖାଦ୍ୟରେ ବଞ୍ଚେ ବସଂତରାୟ । ବାପା ମାର ପରିଚିତି ଶୂନ୍ୟ ବସଂତରାୟ ପାଇଁ ସବୁ ଶ୍ରେଣୀ ସମାନ । ତାର ଜାତି, ତାରଧର୍ମ, ତାର ଭାଷା, ସବୁ ଗୋଟିଏ ଶ୍ରେଣୀ ।

ବର୍ଗହୀନ, କ୍ରୀୟାହୀନ, ଶ୍ରେଣୀହୀନ ବସଂତରାୟ ବଞ୍ଚେ । ହସିହସି ବଞ୍ଚେ । କେବେହେଲେ ତା ଆଖିରେ ଲୁହ ଟଳମଳ ହୁଏ ନାହିଁ ।ଜୀବନ ବୋଝପରି ନଇଁ ପଡେ ନାହିଁ । ସେହି ବଞ୍ଚିବା ତାକୁ ଦେଇଛି ନୂଆ ଜୀବନ, ଯେଉଁ ଜୀବନ ଏକ ଖୋଲା କାବ୍ୟଗ୍ରନ୍ଥର ପଂକ୍ତି ନୁହେଁ ବା ଉପନ୍ୟାସର ପରିଚ୍ଛେଦ ନୁହେଁ ।

ବସଂତରାୟ ପାଇଁ ଜୀବନ ହିଁ ମୂଲ୍ୟ ରଖେ ଏବଂ ସେ ବଞ୍ଚିବାକୁ ସଂଗ୍ରାମ କରେ । ଦିନ୍‌ର ଖୋଳପାକୁ କାଢି ଫୋପାଡି ଦେଇ ଏକ ନୂଆ ରୂପ ଓ ରଙ୍ଗରେ ପ୍ରସ୍ଫୁଟିତ ହେବାର ଚେଷ୍ଟାରେ ସଫଳତା ପାଏ ।

ବସଂତରାୟ ହ୍ୟାପ୍ ପ୍ୟାଣ୍ଟ ପିନ୍ଧି ନୂତନ ସକାଳକୁ ନିଜ ଆଖିଫାଡି ଦେଖୁଥିଲା ଓ ଚାଲିବାକୁ ଲାଗିଥିଲା । ରାସ୍ତାର ନର୍ଦ୍ଦମାରେ ଅସହାୟ ଛୁଆମାନେ କୁକୁର ସହିତ ଅଇଁଠା ଗୋଟାଇବାକୁ ଯୁଦ୍ଧ କରୁଥିଲେ । କେହି ବଡ ପାଟିରେ ଚିତ୍କାର କରି ତାର ବଂଶ, ନାମ, ଗୋତ୍ର, ଜାତି, ଗୋଷ୍ଠୀ ବା ଶ୍ରେଣୀ କଥା ପଚାରୁ ନଥିଲା। ।

ବସଂତ ରାୟ ସୂର୍ଯ୍ୟପରି ମହାନ୍ ଓ ବିଶାଳ ହୋଇ ସମାଜ ଉପରେ ଛାଇ ହୋଇ ଯାଇଥିଲା ।



# ଶକୁନିଙ୍କ ପଶାକାଠି

ଯମେଶ୍ୱରଙ୍କୁ ରାତିସାରା ନିଦ ନାହିଁ । ରହି ରହି କବାଟ ଧଡ୍ ଧଡ୍ ମଧ୍ୟ ହେଉଛି । କାହାର ଏପରି ଧକ୍କାମାରିବା । ଘଡିକୁ ଘଡି ଧକ୍କା । ଯମେଶ୍ୱର ଭୟରେ ଜଡସଡ ହୋଇ ଖଟଉପରେ କୁକୁରି କାକୁରି ହୋଇବସିଛନ୍ତି । ତାଙ୍କ ଘର କବାଟକୁ ଡକାୟତମାନେ ଭାଙ୍ଗି ଭିତରେ ପଶିଗଲେଣି । ଦୀପ ଲିଭିବାକୁ ଅଳ୍ପ ସମୟ ବାକି । ତେଲ ଶେଷ ହୋଇଯାଇଛି । ତାଙ୍କ ଜୀବନ ଦୀପକୁ ସେହି ଡକାୟତମାନେ ଶେଷ କରିଦେବାକୁ ହେଇ ଆଗେଇ ଆସୁଛନ୍ତି । କୋକେଇ ଭିତରେ ଶବଟି ଚୁପ୍ ଚୁପ୍ ରହିଥିବା ପରି ଯମେଶ୍ୱର ବିଛଣାଉପରେ ପଡିଥିବା ତେଲିଆ ଚାଦରଟିକୁ ନିଜ ଦେହରେ ଗୁଡାଇଦେଇ ଶିବ ପଞ୍ଚାକ୍ଷର ମନ୍ତ୍ର ପଢିବାକୁ ଆରମ୍ଭ କରି ଦେଇଥାନ୍ତି ।

ଜୀବନଟା ଯେମିତି ପିଲାଙ୍କ ଧୂଳିଖେଳ ଡକାୟତମାନଙ୍କ ନିକଟରେ । ଆଜି ଏ ଗାଁ, କାଲି ସେ ଗାଁରେ ଡକାୟତି ହେବାର ଖବରରେ ଗାଁ ଲୋକମାନେ ଅତିଷ୍ଠ । ଧନ ନେବା ସହିତ, କେହି ବାଧା ଦେବାମାତ୍ରେ ଚକ୍ ଚକ୍ ଇସ୍ପାତ ଛୁରୀରେ କମାଲ ଦେଖାଇ ଦେଉଛନ୍ତି । ଗତ ଦୁଇ ଦିନ ତଳେ ପାଖ ଗାଁ ଅସନିପୁରରେ ଏଇମିତି ଘଟଣା ଘଟିବାର ସେ ନିଜ ଚକ୍ଷୁରେ ଦେଖି ଆସିଛନ୍ତି । କାନ୍ଥ ଭାଙ୍ଗି ଘରଭିତରେ ପଶିଯିବା ବେଳକୁ ଘରର ଭେଣ୍ଡିଆ ଟୋକା ଦିଜଣ ବାଧାଦେଲେ । ଅନ୍ତଃବୁଜୁଳା ଫୁଟାଇ ଛୁରୀଭେଦିଦିଗଲା । ଘର ଚଟାଣ ତମାମ୍ ତାଜାରକ୍ତ । ପୁଲିସ୍ କି ପୁଲିସ କୁକୁର କେହି ପତ୍ତା ପାଇଲେ ନାହିଁ ।

ଲୋକମାନେ ଗାଁରେ ଅନେକ ଫୁସଲା ଫୁସୁଲି ହେଲେ । କେହି କେହି ଚୁପ୍ ଚୁପ୍ କହୁଥିଲେ ଡକାୟତି ଗାଁ ବିବାଦରୁ ହୋଇଛି । ଗତ ନିର୍ବାଚନରେ ବିରୋଧ ପକ୍ଷ ପ୍ରାର୍ଥୀଙ୍କର ପ୍ରଚାର ଦାୟିତ୍ୱ ନେବାର ଫଳ । କିନ୍ତୁ ପ୍ରମାଣ ନାହିଁ । ଡକାୟତ ମାନେ କିଛି ସୁରାକ୍, କିଛି ପ୍ରମାଣ ଛାଡିବାର ଦେଖାଯାଉ ନାହିଁ ।

ଯମେଶ୍ୱରଙ୍କର ଜୀବନ ପ୍ରତି ଭୟବେଶୀ । ମରିବା ନାଁ ଶୁଣିବା ମାତ୍ରେ ସେ ବରଡାପତ୍ର ପରି ଥରନ୍ତି । ପଞ୍ଚସ୍ତରୀ ବର୍ଷ ବୟସରେ ମଧ୍ୟ ଭେଣ୍ଡିଆ ମାନଙ୍କ ପରି ଦେହରେ ବଳ । ଏହାର ରହସ୍ୟ ପଚାରିଲେ ସେ କହନ୍ତି, ସବୁ ସେଇ ଗୋରସର ମାହାତ୍ମ୍ୟ । ଗାଈ ଖିରି ଦିନକୁ ଦିଲିଟର ଏକାବେଳେ ପିଇ ଦେବାର ସେ ଅନେକ ଦିନରୁ ଅଭ୍ୟସ୍ତ । ଖାଣ୍ଟି କ୍ଷୀର ପାଇବାକୁ ତାଙ୍କ ଘରେ ସଦାସର୍ବଦା ଗାଈଟିଏ ରହିଥିବାର ଦେଖାଯାଏ ।

ଯମେଶ୍ୱରଙ୍କ ଜୀବନ ଇତିହାସ ବଡ ବିଚିତ୍ରପୂର୍ଣ୍ଣ । ତାଙ୍କୁ ସେ ଗାଁର ସବୁ ଲୋକେ ଅଜା ବୋଲି ଡାକନ୍ତି । କେମିତି ଅଜା ହେଲେ କାହାଦ୍ୱାରା ପ୍ରଥମେ ଅଜା ଡକାହେଲେ ତାର କୌଣସି ତଥ୍ୟ କେହି ଦେଇପାରନ୍ତି ନାହିଁ । କାଲି ଯେ ଜନ୍ମ ହୋଇଛି ସେ ବଡ ହେବା ମାତ୍ରେ ତାଙ୍କୁ ଅଜା ଡାକିବାକୁ ଆରମ୍ଭ କରିଦଏ । ସେଥିରେ ସେ ଆଦୌ ବିଚଳିତ ବା ବ୍ୟସ୍ତ ହେଉଥିବାର କେହି ଦେଖିନାହାନ୍ତି । ଯମେଶ୍ୱରଙ୍କ ନିଜ ପୈତୃକଘର କେଉଁଠି ଏବଂ ସେ କେବେ ଏଠାକୁ ଆସିଲେ, ତାହା ସେ ପ୍ରକାଶ କରନ୍ତି ନାହିଁ । ଏ ଗାଁରେ ରହିବା ଷାଠିଏ ବର୍ଷ ହେଲାଣି । କେହି କେହି ଗାଁବାଲା ଯମେଶ୍ୱରଙ୍କୁ ଦେଖାଇ କହୁଥିବାର ଶୁଣାଯାଏ, ଯଦି ମଣିଷ ହେବାକୁ ଚାହଁ ତେବେ ଯମେଶ୍ୱରଙ୍କ ଠାରୁ ଶିଖ । ଦେଖ, ସେ କେମିତି ଗାଁରେ ଭଲ କୋଠାଘର ଖଣ୍ଡିଏ କରିଛି । ପିଲା ଦୁହିଁକୁ ପାଠ ପଢାଇ ମଣିଷ କରିଛି । କେଉଁମାସ ତାର ମନିଅର୍ଡର ନ ଆସୁଛି କୁହତ ଦେଖି । ମାସକୁ ମାସ ଠିକ୍ ପାଞ୍ଚ ତାରିଖରେ ମନିଅର୍ଡର ପୁଅ ଦୁହିଁଙ୍କ ପାଖରୁ ଆସି ପହଞ୍ଚୁବ । ଆଜିକାଲି କୋଉ ପୁଅ ଏମିତି ଅଛନ୍ତି ।

ଗାଁ ଲୋକଙ୍କ କଥାରେ ଯେତେ ସତ ଥାଉନା କାହିଁକି ଯମେଶ୍ୱରଙ୍କର ପୁଅ ଦୁହିଁଙ୍କ ଉପରେ ଭାରି ଭୟ । ବୋହୂ ବୋଲକରା ହୋଇ ଟୋକା ଦିଟା କାଳେ ଟଙ୍କା ତାଙ୍କ ଘରକୁ ଚାଲାଣ କରିଦେବେ, ଏ ନେଇ ଚିନ୍ତିତ ଏବଂ ପୁଅ ଦୁହିଁକୁ ବାରମ୍ବାର ତାଗିଦା । ପିଲା ଦୁଇଟା ସୁଧାର ଗାଈ । ବାପା ହିଁ ତାଙ୍କର ଧର୍ମ, ତାଙ୍କର ଗୁରୁ, ତାଙ୍କର ଇଷ୍ଟ । ପିତାଆଜ୍ଞା ପାଳନ କରିବାରେ ସେମାନେ ଦଶରଥଙ୍କ ପୁତ୍ର ରାମଚନ୍ଦ୍ରଙ୍କୁ ମଧ୍ୟ ଟପିଯାଇଛନ୍ତି ।

ଯମେଶ୍ୱର କେତେ ପାଠ ପଢିଛନ୍ତି, କୋଉଁ ସ୍କୁଲରେ ପଢୁଥିଲେ ସେ ବିଷୟରେ କେହି କିଛି ଜାଣି ନାହାନ୍ତି । ସେ କାହାକୁ କେବେ କହିଥିବାର ଜଣା ନାହିଁ । କିନ୍ତୁ ଭାରି ହିସାବୀ ଓ ତାଙ୍କ ଗାଁ ମାମଲତ ଓ ପେଞ୍ଚପାଞ୍ଚରେ ପଶିବା ବଡ କଷ୍ଟ । ଗାଁ ଡ୍ରାମାରେ ତାଙ୍କର ନିର୍ଦ୍ଦିଷ୍ଟ ଭୂମିକା ରହିଛି । କେତେଥର ସେ ଶକୁନି ଭୂମିକାରେ ପାର୍ଟକରି ପ୍ରକୃତ ଶକୁନି ଅଭିନୟରେ ନିଖୁଣତା ଯୋଗୁଁ ତାଙ୍କୁ ଶ୍ରେଷ୍ଠ ଅଭିନେତା ଭାବେ ପୁରସ୍କାର ଓ ବିଜୟଶ୍ରୀ ବିମଣ୍ଡିତ କରାଯାଇଛି । କେହି ଭାବି ପାରେନା ଏ ହେଉଛନ୍ତି ଯମେଶ୍ୱର ଅଜା । ସମସ୍ତେ ଭାବନ୍ତି ଦ୍ୱାପର ଯୁଗର ଶକୁନି କଳିଯୁଗର ଏଇ ଗ୍ରାମରେ ଆସି ଅବତରଣ କରି ବସବାସ କରୁଛନ୍ତି । ପଶାପାଲିରେ ପକାଇବା ଦାନର କୌଶଳ ଯୋଗୁଁ ଯେ ସେହି ଗ୍ରାମର କେତେ ପାଣ୍ଡବ କୂଳକୁ ଭିଟାମାଟିରୁ ଉଚ୍ଛନ୍ନ କରି ପାରିଛନ୍ତି ।

ସେଇ ଯମେଶ୍ୱର ଆଜି ଭୟରେ ଜଡସଡ । ଦୁଇ ଦୁଇଟା ଡକାୟତଙ୍କୁ କରାୟତ କରି ପାରିବାର ଦକ୍ଷତା ଓ ଶକ୍ତି ରଖୁଥିବା ସେ ଡକାୟତ ମାନଙ୍କ ଭୟରେ ବ୍ୟାଧଜାଲରେ ମୃଗଶିଶୁ

ପଡ଼ିବା ପରି ଭୟାର୍ତ୍ତ । କବାଟରେ ଠକ୍ ଠକ୍ ହେଉଥିବାର ଶବ୍ଦ ଜୋର ସୋରରେ ଶୁଣି ସେ ଏତେ ଶୀଘ୍ର ଡକାୟତଙ୍କ ହାତରେ ମରିବାକୁ ଇଚ୍ଛାକରୁ ନାହାନ୍ତି ।

ଡକାୟତଙ୍କୁ ଭୟ ପାଇବାର କାରଣ ତାଙ୍କର କୋଷ୍ଠୀ । ଜାତକରେ ଗଭୀର ବିଶ୍ୱାସ ସ୍ଥାପନ କରୁଥିବା ଯମେଶ୍ୱରଙ୍କର କେହି କୋଷ୍ଠୀ ଗଣନା କରି କହିଛି ଯେ ହଠାତ୍ ଦିନେ ତାଙ୍କୁ ଡକାୟତମାନେ ଭୂଷି ଦେବେ ଓ ତାଙ୍କର ମୃତ୍ୟୁ ହେବ । ସେହି ମୃତ୍ୟୁକୁ ପାରିହେବା ପାଇଁ ସେ ହନୁମାନ ଚାଳିଶା ପ୍ରତ୍ୟେକ ଦିନ ପଢି ପଢି ମୁଖସ୍ଥ କରି ଦେଇଛନ୍ତି । ପ୍ରତ୍ୟେକ ଦିନ ଭୋରୁ ଖୁବ୍ ଜୋର୍‌ରେ ହନୁମାନ ଚାଳିଶା ପଢିବା ସହିତ, ଭଜନ ବୋଲନ୍ତି । ନିଜେ ନିଜେ ହେଉଛନ୍ତି ସେ ଭଜନର ରଚୟିତା । ଅନେକ ଦିନ ଧରି ଭଜନ ଲେଖିବା ତାଙ୍କର ଅଭ୍ୟାସ । ରେଡିଓରେ ଗୀତିକାର ଭାବେ ଖ୍ୟାତି ପାଇବାକୁ ଇଚ୍ଛାକରି, ସେ ଏପରି ଏକ ସାଧନାରେ କିଛି କିଛି ମୂଲ୍ୟବାନ ସମୟ ଦେଇଥାନ୍ତି । କିନ୍ତୁ ଏପର୍ଯ୍ୟନ୍ତ ତାଙ୍କ କପାଳରେ କବି ଭାବରେ ଅରୁଆ ଚାଉଳ ଓ ଦୁବ ପଡିନାହିଁ ।

ଯମେଶ୍ୱରଙ୍କର ମରିବା ଭୟ ପିଲାଦିନୁ କିନ୍ତୁ ବୟସ ବଢିବା ସଙ୍ଗେ ଏହା ବୃଦ୍ଧି ପାଇବାରେ ଲାଗିଛି । ସେଇଥିପାଇଁ ପତ୍ନୀ ମନୋରମା ତାଙ୍କ ସହିତ ବେଶ ସଙ୍ଗତ ଭାବେ ବ୍ୟବହାର କରନ୍ତି । ମନୋରମାଙ୍କୁ ଦେଖିଲେ କିପରି ପ୍ରଜାପତିଏ ଦୁହିଁଙ୍କର ଘଟସୂତ୍ର ସ୍ଥାପନ କଲେ, ତାହା ନେଇ ସନ୍ଦେହ ଦେଖାଯାଏ । ନିଜ ପୈତୃକ ଘରେ ରହୁଥିବା ମନୋରମାଙ୍କୁ ଦେଖିଲେ ସେ ଗୃହକର୍ତ୍ତୀ ବୋଲି ବୁଝାଯାଏ ନାହିଁ । ନୁଖୁରାବାଳ, ଅପରିଷ୍କାର ଲୁଗାପଟା, ଜୀର୍ଣ୍ଣଦେହ ଭିତରେ ସବୁ ନିରବରେ ଗ୍ରହଣ କରି ନେଇଥିବାର ଭାବ ମନରେ ତାଙ୍କ ପ୍ରତି ସମବେଦନା ଜଗାଏ । ନଈକୂଳେ ଗାଧୋଇବା ବେଳେ ଅନ୍ୟ ସ୍ତ୍ରୀଲୋକ ଦେଖେଇ ହୋଇ କେତେ କଥା କହନ୍ତି । ନୂଆ ଭୂଆଷୁଣୀଏ ଗେଲ ଥଟ୍ଟାକରି କହୁଥିବାର ଶୁଣାଯାଏ ଆଲୋ ଆଈ, ଆଜିକାଲି ତୋ ପାଖରେ ଅଜା ଆଉ ନାହାନ୍ତି କି ?

ଯମେଶ୍ୱର ଗାଁ ଚର୍ଚ୍ଚାର କେବେକେବେ କେନ୍ଦ୍ରବିନ୍ଦୁ ହୋଇଯାନ୍ତି । ଜମିଦାରଙ୍କୁ ଫୁସଲା ଫୁସଲି କରି ଯେତକ ଗୋଚର ଜମିକୁ ନିଜ ନାଁରେ କରି ନେଇଥିବାର ଲୋକେ ଫୁଟଫାଟ ହେଲେବି ତାଙ୍କ ମୁହଁରେ ଏକଥା କେହି ଭରସି କରି କହି ପାରନ୍ତି ନାହିଁ । କାରଣ ସେ ସମସ୍ତଙ୍କୁ ଅଜାସୁଲଭ ହସରେ ବାନ୍ଧି ପକାନ୍ତି । ଉତ୍ସବ ନିମିତ୍ତରେ, କିମ୍ବା କେହି ମରିଗଲେ, ତାଙ୍କ ଘରେ ଦିନସାରା ଡେରା ପକାନ୍ତି ସେ । ମଡା ଉଠାଇବାଠାରୁ ଆରମ୍ଭ କରି ରୋଷେଇ କରିବା ସବୁକାମ ଯେମିତି ତାଙ୍କ ବାଁ ହାତର ଖେଳ । ଘରକୁ ଫେରିବାବେଳେ କଳିକତି ନାଲି ଗାମୁଛାରେ ପୁଟୁଳିଟିଏ ବନ୍ଧାହୋଇ କାନ୍ଧରେ ପଡିଥିବାର ଦେଖାଯାଏ ।

ସେହି ଯମେଶ୍ୱରଙ୍କର ଡକାୟତ ମାନଙ୍କୁ ଭାରିଭୟ । ଜୀବନରୁ ତାଙ୍କୁ ଶେଷ କରିଦେବେ ଏଇ ଭୟରେ ସେ ଏତେ ଜଡ ସଡ ଯେ ଅନେକ ଦିନରୁ ସାଇତି ରଖିଥିବା ଅଜସ୍ର ଗୋଟା ରୂପାଟଙ୍କା ଓ ହନୁମାନ ପଇସାକୁ ନିଜ ମୁଣ୍ଡତଳେ ସାଇତି ରଖିଛନ୍ତି । ପୁରୁଣାକାଳିଆ ଖଟ ଉପରେ ପରସ୍ତ ପରସ୍ତ କରି କନ୍ଥାପକାଇ ଓଜନିଆ ଗଦି କରି ଦେଇଛନ୍ତି । ନୂଆଘର କରିବାବେଳେ ଶୋଇବା ଘରେ ଚୋରା କବାଟ । ଡକାୟତ ମାନଙ୍କ ଭୟରେ ଏହି ଚୋରାକୋଠୀଟି କରି

ରଖିଛନ୍ତି । ହଠାତ୍ ଯଦି ଡକାୟତ ମାନେ ପଶି ଆସନ୍ତି, ତେବେ ଏହି ଚୋରାକୋଠୀ ଭିତରେ ପଶି କବାଟକୁ ନିବୁଜ କରିଦେବେ । ତଥାପି ଡକାୟତମାନଙ୍କ ହାତରେ ମରିବାକୁ ଭୟ ।

ବାହାର ଡକାୟତମାନଙ୍କ ଅପେକ୍ଷା ଗାଁ ଡକାୟତଗୁଡାକୁ ତାଙ୍କର ବେଶିଭୟ । ଏମାନେ ମଣିଷ ମାରୁ । ଜୀବନ ଶେଷକରି ଦେବେ । କବାଟ ଧକ୍କା ଶବ୍ଦରେ ସେ ପ୍ରମାଦ ଗଣିଲେ । କବାଟ ଖୋଲିବାକୁ ମନରେ ଭୟ । ରାତି ସାରା ଉଜାଗର ରହି ଭୋକୁ ଭୋକୁ ବଡ ପାଟିର ଚିତ୍କାରରେ ଗ୍ରାମବାସୀ ମାନଙ୍କର ଭୋର ନିଦ ପାଣିଚିଆ ପାଲଟି ଯାଇଥିଲା । ଦଳଦଳ ହୋଇ ଗାଁ ଲୋକେ ତାଙ୍କ ଦୁଆର ମୁହଁରେ ଏକାଠି ହେବା ବେଳେ ସେ ସେମାନଙ୍କ ଭିତରେ ଡକାୟତ ଅଛନ୍ତି ବୋଲି ଭାବି ନେଇଥିଲେ ଓ ବାରମ୍ବାର ବଡିଭୋକୁ କୁଆରାବ ପରି ରାବିବାକୁ ଲାଗିଥିଲେ ।

ପୁଲିସରେ ଖବର ଦେବା ନିହାତି ଦରକାର । ଆଗରୁ ସାବଧାନ ନହେଲେ, ଆଜି କବାଟ ଧଡ ଧଡ ହେଲା, କାଲିକି କଣ ହେବ । ଏତେଟା ବେପରୁଆ ହେଲେ ଚଳିବ ନାହିଁ । ଅନେକ ଥର ସେ ଏଇ ଥାନା ବାରଣ୍ଡାକୁ ଆସିଛନ୍ତି । ଲୋକଙ୍କୁ ସାବାଡ୍ କରିବାକୁ ହେଲେ ଏଇ ବାରଣ୍ଡାରେ ଟହଲ ମାରିବାକୁ ହୁଏ । ନାଲି ପଗଡିର ଦୃଶ୍ୟରେ ଗାଁ ଦାଣ୍ଡରେ ତାଟିକବାଟ ପଡିଯାଏ । ନିଜ ବଳଉପରେ ଯେତେ ଅଗାଧ ବିଶ୍ୱାସ ଥିଲେ ମଧ୍ୟ ନିଜକୁ ଅଧିକ ସୁରକ୍ଷିତ କରିବା ପାଇଁ ସେ ପୁଲିସର ସହାୟତା ଲୋଡିଛନ୍ତି । ଯୋଡାକୁ ଘୋଡା ପାରେନି । ସେମାନେ ତ ଜଣେ ନୁହଁନ୍ତି । ଜଣ ଜଣ କରି ପାଞ୍ଚ ବା ପଚିଶ । ସେ ଏକେଲା । ଏତେ ଲୋକଙ୍କୁ କେମିତି କାବୁକରି ପାରିବେ । ଏମାନଙ୍କୁ ସାବାଡ୍ କରିବାର ଏକମାତ୍ର ବାଟ ପୁଲିସ । ପୁଲିସ ହାଜତରେ ରହି ଦି ଚାରି ଖୋବା ଖାଇଲେ, ଶଳେ ଠିକ୍ ରାସ୍ତାକୁ ଆସିବେ । କବାଟରେ ଆଉ ଠକ୍ ଠକ୍ ଧଡ୍ ଧାଡ୍ କରିବେ ନାହିଁ । ଚକ୍ ଚକ୍ ଧାର ଥିବା ଶାଣଦିଆ କତାଧରି ମାଡି ଆସିବେ ନାହିଁ ।

ପଶାପାଲିରେ ସେ ଦାନ ଚଳାଇ ଜାଣନ୍ତି । ତାଙ୍କ ହାତରୁ ପଶାପାଲିର ଗୋଟେ ହେଲେ ଗୋଟି ବର୍ତ୍ତି କରି ଯାଇପାରି ନାହିଁ । ପାଣ୍ଡବମାନେ ଧନ, ରାଜ୍ୟ, ସ୍ତ୍ରୀ ହାରି ଲୁଚି ବୁଲିଛନ୍ତି ଜଙ୍ଗଲରେ । ଦୁର୍ଯ୍ୟୋଧନ ହେଷ୍ଟାଳ ରଡି ଛାଡି ଭଗ୍ନଜାନୁ ହେବ । ପରିବାରର ଗୋଟିକ ପରେ ଗୋଟିଏ ମରଣ ଦେଖିବ ସେ । ଲକ୍ଷ୍ମଣକୁମାରର ଶବଧରି ରକ୍ଷା ପାଇବାର ଚେଷ୍ଟା ତାକୁ ବଞ୍ଚେଇ ପାରିବ ନାହିଁ । ସବୁକଥା କରିବେ ଶକୁନି । ତାଙ୍କର ତ ଜନ୍ମ ସେଇଥିପାଇଁ । ସେଇଥିପାଇଁ ମରିବାକୁ ଇଚ୍ଛାକରନ୍ତି ନାହିଁ । ସେ ବଞ୍ଚିକରି ଜଗତରେ ଧର୍ମ ସ୍ଥାପନ କରିବେ ।

ଦଳବଳ ପୁଲିସ ଗାଁ ଦାଣ୍ଡରେ ପହଞ୍ଚିଗଲେ । ଯମେଶ୍ୱରଙ୍କୁ ସେ ମାସ ମନିଆର୍ଡର ଅର୍ଥ ଏଥିପାଇଁ ଶ୍ରାଦ୍ଧ କରିବାକୁ ହୋଇଥିଲା । ଗାଁର ସାନ ସାନ ପିଲାଏ ପୁଲିସବାଲାଙ୍କୁ ପଛେ ପଛେ ସୁର ଲଗାଇ ଗାଉଥିଲେ, ଅଜା ଘରେ କେତେ ତାରା, ମାମୁଁ ଆସିଛନ୍ତି ଧରିବେ ପରା । ଯମେଶ୍ୱର ଏମାନଙ୍କୁ ହା ଭାଗ, ହା ଭାଗ କହି ଗୋଡାଇବା ବେଳେ ସେମାନେ ତାଙ୍କ ଚାରିକରରେ ଘେରି ଯାଇ ସେହି ଗୀତକୁ ଦୋହରାଉଥିଲେ । ଦୁଆର ମୁହଁରେ ଡେରା ପକାଇ ଜଣକ ପରେ ଜଣକୁ ପ୍ରଶ୍ନ କରି ଚାଲିଲେ ଦାରୋଗାବାବୁ । ଡକାୟତମାନେ ଆସିବାର କୌଣସି ସଠିକ୍ ସୂଚନା ବା ନିର୍ଭର ଯୋଗ୍ୟ ପ୍ରମାଣ ନଥିଲା । ହୁଏତ ରାତିରେ କୁକୁର ବା ବିଲେଇ କବାଟ ଠେଲି ପାରନ୍ତି

କିମ୍ବା ଯମେଶ୍ୱରଙ୍କର କେହି ପୂର୍ବପୁରୁଷ ଭୂତହୋଇ ତାଙ୍କ ଅଂଶ ନେବା ପାଇଁ ଆସି ଥାଇ ପାରନ୍ତି ବୋଲି ସରଜମିନ୍ ତଦନ୍ତ ରିପୋର୍ଟରେ ଜମାଦାର ଲେଖିବାକୁ ଆରମ୍ଭ କରି ଦେଇଥିଲେ । ଜମାଦାରଙ୍କ କଥାକୁ ଗାଁ ଲୋକେ ମୁଣ୍ଡଟୁଙ୍ଗାରି ସମର୍ଥନ କରୁଥିଲେ ।

ଘର ଭିତରୁ ଦୌଡି ଆସୁଥିଲେ ଯମେଶ୍ୱର । ହାତରେ ଶାଣଦିଆ କତା । ଏଇ ଦେଖନ୍ତୁ, ଏଇ କତା । ଏଇ କତାରେ ମୋତେ ସେମାନେ ମାରିବାକୁ ଆସିଥିଲେ । ମୋତେ ବିଶ୍ୱାସ କରନ୍ତୁ । ସେମାନଙ୍କୁ ଆରେଷ୍ଟ କରି ଗାଁ ଦାଣ୍ଡରେ ଘୋଷାଡି ଘୋଷାଡି ନେଇ ଯାଆନ୍ତୁ । ଥାନା ହାଜତରେ କିଛି ଦିନ ରହିଯିବାପରେ ସାବାଡ୍ ହୋଇଯିବେ ।

ଏମାନଙ୍କୁ ଆଦୌ ଛାଡନ୍ତୁ ନାହିଁ । ଏମାନେ ମୋତେ କଲବଲ କରି ଟିକ୍ ଟିକ୍ କାଟି ପକାଇଛନ୍ତି । ଏଇ ଧାରୁଆ କତାରେ ମୋର ଗଣ୍ଡି, ମୁଣ୍ଡ, ହାତ, ଗୋଡ ସବୁ ଅଲଗାକରି ଦେଇଛନ୍ତି । ଏମାନେ ସମସ୍ତେ ଜଣେ ଜଣେ ଡକାୟତ । ଏମାନଙ୍କୁ ଧରି ନିଅନ୍ତୁ । ନେଇ ଯାନ୍ତୁ ଏମାନଙ୍କୁ ।

ଲୋକମାନଙ୍କୁ ହତଚକିତ କରି, ଗାଁର ଏମୁଣ୍ଡ ସେମୁଣ୍ଡ ଘରର ଏପାଖ ସେପାଖ ବୁଲି, ହାତରେ କତାଧରି ଯମେଶ୍ୱର ଉଚ୍ଚସ୍ୱରରେ କହୁଥାଚି, ବଂଧୁଗଣ ! ଡକାୟତ ମାନେ, ଗାଁ ବାଲାଏ, ନାଟକର ଶେଷ ଦୃଷ୍ୟ ଉପସ୍ଥିତ । ଦର୍ଶକ ମଣ୍ଡଳୀକୁ ଯମେଶ୍ୱର ଅଭିନନ୍ଦନ କରୁଛି । ସେମାନେ ଜଣକ ପରେ ଜଣେ ଯମେଶ୍ୱରଙ୍କୁ ମାରିବାରେ ସାହାଯ୍ୟ କରିଛନ୍ତି । ଯମେଶ୍ୱରଙ୍କର ମୃତ୍ୟୁ ଘଟିଛି ।

ମୁଁ ଯମେଶ୍ୱର । ଯମେଶ୍ୱର ପାଇଁ କହୁଛି । ତୁମମାନଙ୍କୁ ଏ ପୁଲିସଦଳ ବାନ୍ଧି ନେବେ । ହାଜତ୍‌ରେ ଭର୍ତ୍ତି କରିଦେବେ । ଜେଲ୍‌ରେ ଚକି ପେଶାଇବେ । ଯମେଶ୍ୱରଙ୍କୁ ମାରିବାର ଫଳ ତୁମମାନଙ୍କୁ ଭୋଗ କରିବାକୁ ପଡିବ ।

ତୁମେ ଭାବିଛ ଯମେଶ୍ୱରଙ୍କୁ ମାରି ତୁମେ ଶାନ୍ତିରେ ରହିବ । ତୁମକୁ ଶାନ୍ତିରେ ରହିବାକୁ ଦେବି ନାହିଁ । ତୁମେ ଯମେଶ୍ୱରଙ୍କୁ ମାରି ପାରିବ ନାହିଁ ।

ହାତରେ କତାଧରି ବାରଣ୍ଡା କୋଣରେ ଚୁପ୍ ଚାପ୍ ଜଡ ସଡ ହୋଇ ବସିଥିଲେ ସେ । ସେ ମରିବାକୁ ଭୟ କରୁଥିଲେ । ତାଙ୍କର ଅନେକ କାମ ବାକି । ରେଡିଓରେ ଗୀତିକାର ହେବେ ।ପଣାପାଲିର ଗୋଟିଗୁଡିକ ଏପର୍ଯ୍ୟନ୍ତ ନିର୍ଭୀକ ହୋଇ ଠିଆ ହୋଇଛନ୍ତି । ତାକୁ ମାରିବାକୁ ହେବ । ସମସ୍ତେ ନମଲା ପର୍ଯ୍ୟନ୍ତ ଏଖେଳରେ ଶେଷ ନାହିଁ । ସେ ପାଣ୍ଡବ ଓ କୌରବ କୁଳକୁ ଧ୍ୱଂସ କରିଦେବେ । ସେଥିପାଇଁ ତାଙ୍କର ଜନ୍ମ । ସେଇ ଜନ୍ମ ସାର୍ଥକ କରିବାକୁ ସେ ମରିପାରିବେ ନାହିଁ । ସେ ପଶାକାଠି ଗଡାଇ ଚାଲିବେ ।

ଏକଲା କୋଣରେ ବସିଥିବା ଯମେଶ୍ୱରଙ୍କୁ ଚାହିଁ ପିଲାଏ ଟିହିକାମାରି ଗାଉଥିଲେ । ଅଡାଘରେ କେତେ ତାରା, ମାମୁଁ ଆସିଛନ୍ତି ଧରିବେ ପରା । କେହି କେହି ଦୁଷ୍ଟବାଳକ ପ୍ୟାଣ୍ଟ ଖୋଲି ତାଙ୍କ ଆଡକୁ ଚାହିଁ ମୁତିବାକୁ ଲାଗିଥିଲେ ।

ଯମେଶ୍ୱର ବାରଣ୍ଡା କୋଣରେ ଜଡ ସଡ ହୋଇ ମୃତ୍ୟୁକୁ ଚାହିଁ ରହିଥିଲେ ।



# ଶ୍ରୀକୃଷ୍ଣଙ୍କ ଜନ୍ମଦିନ

ସକାଳ ମର୍ଣିଂୱାକ୍‌ରୁ ଫେରିବା ମାତ୍ରେ ଅରବିନ୍ଦଙ୍କ ରେଡିଓ ଖୋଲି ସଂବାଦ ଶୁଣିବା ଓ ଖବର କାଗଜ ଦେଖିବା ଏକ ନିତିଦିନିଆଁ ଅଭ୍ୟାସରେ ପରିଗଲାଣି । ରିଟାୟର୍ଡପରେ ଅନେକ ବେଳ ହାତରେ । କାହିଁକି ତରତର ହେବ ? ଆଉ କେଉଁ ଅଫିସ୍ ଅଛି ଯେ ? ସୂର୍ଯ୍ୟଙ୍କର ପ୍ରଭାତ କିରଣ ପୃଥିବୀ ପୃଷ୍ଠରେ ନଛୁଇଁବା ପୂର୍ବରୁ ମନକୁ ମନ ନିଦ ଭାଙ୍ଗିଯାଏ । ମସଜିଦ୍‌ରୁ ଭାସି ଆସୁଥିବା ଆଲ୍ଲାହୋ ଆକବର ପାଇଁ କାନ ଅପେକ୍ଷା ରଖେ ନାହିଁ । ପ୍ରଥମେ ପ୍ରଥମେ ଉଠିବା ବେଳେ ଅଳସ ଦେହକୁ ଉଠାଇବା ପାଇଁ କେତେ ଭିଡିମୋଡି ହୋଇ ଉଠିବାକୁ ପଡୁଥିଲା । ନିଦ ଭାଙ୍ଗିଯାଉଥିଲେ ବି ସେ ବିଛଣାରେ ପଡିରହି ଅପେକ୍ଷା କରୁଥିଲେ କେତେବେଳେ ପାଖ ମସଜିଦ୍‌ରୁ ସେହି ସ୍ୱର ଶୁଣାଯିବ । ସେ ସମୟରୁ ମୁକ୍ତି ପାଇ ଗଲେଣି ସେ । ଘଣ୍ଟାର ମିନିଟ୍ କଣ୍ଟା ତାର ନିର୍ଦ୍ଦିଷ୍ଟ ଗତିରେ ଠିକ୍ ଚାଲିବା ପରି, ଅରବିନ୍ଦଙ୍କର ଆଖିପତା ପ୍ରତ୍ୟୁଷର ପ୍ରଥମ ସୁନେଲୀ କିରଣ ପୂର୍ବରୁ ଆପେ ଆପେ ଫିଟିଯାଏ । ବନ୍ଦ ହୋଇ ରହିଥିବା କଇଁଫୁଲ ସୂର୍ଯ୍ୟରଶ୍ମିର ସାମାନ୍ୟ ସ୍ପର୍ଶରେ ସମ୍ପୂର୍ଣ୍ଣ ମୁକୁଳି ଯାଇ, ସକାଳ ଫୁଲ ତୋଳାମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ ହେଁ, ତୋଳି ନ ପାରିବାର ଦୁଃଖରେ ସେମାନେ ଫେରି ଯାଉଥିବାର ଦୃଶ୍ୟ ଅରବିନ୍ଦ ମର୍ଣିଂୱାକ୍ କରିବାବେଳେ ତାଙ୍କ ନଜରରେ ପଡେ ।

ପ୍ରତ୍ୟୁଷରେ ଶଯ୍ୟାତ୍ୟାଗକରି ହାତରେ ଆଶାବାଡି ଖଣ୍ଡିକଧରି ରାସ୍ତାଉପରକୁ ବାହାରି ପଡିବା ବେଳକୁ ଫରଚା ଫରଚା ହୋଇ ଆସୁଥାଏ । ବୁଲା କୁକୁର ଗୁଡାକ ପରସ୍ପରକୁ ଗୋଡାଗୋଡି ହୋଇ ଥକି ପଡି ରାସ୍ତାଉପରେ ଶୋଇ ରହି ଧକେଇ ହେଉଥିବା ଓ ରାସ୍ତା ସାରା ଲଣ୍ଡା ଲଣ୍ଡା

ଘୋବର ଭିତର ଦେଇ ଚାଲିବା ବେଳେ ଟିକିଏ ସାବଧାନ ହୋଇ ଚାଲିବାକୁ ପଡେ । ଅରବିନ୍ଦ ମନେ ମନେ ଗୁଣୁ ଗୁଣୁ ହୋଇ ଶିବ ପଞ୍ଚାକ୍ଷର ମନ୍ତ୍ର ଜପକରି ଚାଲୁଥିବାବେଳେ ଆଖି ଦୁଇଟି ପରସ୍ପର ମଧ୍ୟରେ ପ୍ରତିଯୋଗିତା କରି ରାସ୍ତାକଡରେ ଗଡ଼ିଉଠୁଥିବା ବସ୍ତିରୁ ଉଠୁଥିବା ଧୂଆଁ ଓ ଶୁଭୁଥିବା ଚିତ୍କାର ଆଡକୁ ମାଡିଯାଏ ଏବଂ କାନ ଡେରି ହୋଇଉଠେ । ତାଙ୍କର ପ୍ରାତଃଭ୍ରମଣ ଜନିତ ଅନୁଭୂତି ଜୀବନାନୁଭୂତିର ଏକ ଅଂଶ ହୋଇ ଯାଇଥାଏ ।

ଗତକାଲି ଆଞ୍ଚଳିକ ସଂବାଦରେ ଆଚାର୍ଯ୍ୟବିହାର ଛକରେ ଟାଉନ୍‌ବସ୍ ଧକ୍କାରେ ଜଣେ ପାଦଚଲା ବୃଦ୍ଧ ଆହତ ହୋଇ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିବାର ଖବର ଶୁଣିବା ପରଠାରୁ ଅରବିନ୍ଦ ଟିକିଏ ବିବ୍ରତ ଓ ଚକିତ ହୋଇ ପଡିଥାନ୍ତି । ମର୍ଣ୍ଣିଓ୍ବାକ୍ କଲାବେଳେ ଆଜିକାଲି ସେ ବେଶ୍ ସଂଜତ । କାଳେ କେତେବେଳେ କିଏ ଧକ୍କା ମାରି ଚାଲିଯିବ, ଏ ଭୟ ତାଙ୍କ ମନରେ ବେଶ୍ ଶକ୍ତ ଆସନ ଜମାଇ ଦେଇଥାଏ । ନିଜକୁ ଯେତେ ବେପରୁଆ ଓ ସାହସୀ ବୋଲି ଭାବୁଥିଲେ ମଧ୍ୟ, ଭୟ ଛିଦ୍ର ଖୋଜି କେଉଁବାଟେ ମନ ଭିତରେ ପଶି ଯାଇଥାଏ, ତାହା ବୁଝା ପଡୁନଥାଏ । ଶିବ ପଞ୍ଚାକ୍ଷର ମନ୍ତ୍ରର କୌଣସି ଅର୍ଥନାହିଁ ବୋଲି ସେ ଅନୁଭବ କରୁଥିଲେ ହେଁ, ଅଭ୍ୟାସ ବଶତଃ ମନେ ମନେ ଗୁଣୁ ଗୁଣୁ ହୋଇ ପ୍ରତ୍ୟେକ ଦିନ ବାଟ ଚାଲିବାବେଳେ ଆବୃତ୍ତି କରି ଚାଲିଥାନ୍ତି ।

ଦିନକୁ ଅତି କମ୍‌ରେ ୬କି.ମି ରାସ୍ତା ଚାଲିବା ତାଙ୍କର ଧାର୍ଯ୍ୟସୀମାରେ ଆଦୌ ବ୍ୟତିକ୍ରମ ହୁଏନା । ନାଇକୋ ଛକରୁ ଆଚାର୍ଯ୍ୟବିହାର ଛକ ପର୍ଯ୍ୟନ୍ତ ଯିବା ଆସିବାରେ ପ୍ରାୟ ଦୁଇଘଣ୍ଟା ଲାଗେ । ସକାଳ ପାଞ୍ଚଟାରୁ ସାତଟା । ଏଇ ଦୁଇ ଘଣ୍ଟା ଚାଲି ତାଙ୍କ ଜରାଜୀର୍ଣ୍ଣ ହୋଇ ଆସୁଥିବା ଶରୀରକୁ ଟିକିଏ ସ୍ଫୂର୍ତ୍ତି ଦେବାରେ ସହାୟକ ହୋଇଥାଏ ଓ ପରିବାରର ଯାବତୀୟ ଦୁଃଖ ଭୁଲିଯିବାର ଔଷଧ ପରି କାମ କରେ । କିନ୍ତୁ ମନର ଖୋପ ଭିତରେ ସଯତ୍ନ ସାଇତା ହୋଇଥିବା ସ୍ମୃତିମାନ କଦଳୀ ବା ସୁଙ୍ଗାରୁ ପରସ୍ତ ପରସ୍ତ ଛାଡିବା ପରି, ତାଙ୍କ ମନରୁ ସକାଳୁଆ ପବନ ଭିତରେ ବାହାରି ବାୟୁମଣ୍ଡଳରେ ଖେଳି ବୁଲେ ।

ଅନୁଭୂତି, ଅନୁଭବ ନିଜର ସୀମା ସରହଦ ଡେଇଁ ଚାଲିବାର ଲାଗେ ଆଶ୍ବସ୍ତି । ବାକିଥିବା ଜୀବନକୁ ସେ ଏଇ ଅନୁଭବ ଓ ଅନୁଭୂତି ନେଇବଞ୍ଚେ ଯଦି ଅନୁଭବ ନଥାନ୍ତା, ତେବେ ମଣିଷ କଣ କି । ଗୋଡି ଗୋଡି, ମାଟି, ପଥର ଓ ମଣିଷ ଭିତରେ ଭିନ୍ନତା ଏଇଠି । ଅରବିନ୍ଦ ଦର୍ଶନର ନିଗୂଢ ତତ୍ତ୍ବମାନଙ୍କୁ ଜାଣି ନଥିଲେ ହେଁ ଦେଶ ରୀତିରେ କେମିତି ଚଳିବାକୁ ହୁଏ, ତାହା ଜାଣନ୍ତି । ତାଙ୍କ ମଣିଷ ପଣିଆର ସଫଳତାର ଚାବିକାଠି ସେଇଠି । ବହୁଲୋକ ଜୀବନର ମୂଲ୍ୟବାନ ଅନୁଭବ ରୂପକ ସତ୍ୟଟିକୁ ବୁଝି ନପାରିଥିବା ହେତୁ ମାନସିକ ଓ ଶାରୀରୀକ ଯନ୍ତ୍ରଣାର ଶିକାର । ନିରାଡମ୍ବର ଜୀବନ ବଞ୍ଚିବାର ଶପଥ ପିଲାଦିନରୁ ତାଙ୍କ ବୋଉର ଜୀବନ ଭିତରୁ ସେ ପାଇଥିଲେ । ଜଗନ୍ନାଥ ଦାସଙ୍କ ଭାଗବତ ବୋଲିବା ବେଳେ ବୋଉ ତାଙ୍କୁ କହିଥିଲେ ସେ ମନେ ରଖୁଥିଲେ । ବାବୁରେ, ଧିରେ ଧିରେ ବହିଚାଲିଥିବା ନଈ ପାଣିଧାର ସବୁରି ପ୍ରିୟ । କିଏ କଣ ନଈବଢିକୁ ଭଲ ପାଏ ? କୂଳ ଲଘିଂବନ୍ଧ ଭାଙ୍ଗିଦେଲେ ଲୋକେ ନଈ ଉପରେ କ୍ରୋଧ କରନ୍ତି । ନଈର ଅପଯଶର ବାନ

ଉଡେ । ଯଶ ପାଇବାକୁ ଆଶା ରଖିଥିବା ମଣିଷ ନଇବନ୍ଧ ଭାଙ୍ଗି ଉଛୁଳି ପଡିବା ପରେ ଉଛୁଳି ଉଠେ ଅହଙ୍କାରରେ ନିନ୍ଦିତ ହୁଏ, ଅପଯଶ ପାଏ, ଏଇ କଥାକୁ ମନେ ରଖିବୁ ସବୁଦିନ ।

ବୋଉ ନାହିଁ । ଅରବିନ୍ଦ ରିଟାୟର୍ଡ । କିନ୍ତୁ ସେଇ ପଦକ କଥା ଅରବିନ୍ଦ ହୃଦୟରେ ଲାଗି ରହିଛି ।

ଆଚାର୍ଯ୍ୟବିହାର ଛକ ଉପରେ ଅନେକ ଲୋକଙ୍କର ଭିଡ । ଏତେବେଗି ଏତେ ଲୋକକାହିଁକି ରୁଣ୍ଡହେଲେ, ଏହା ଜାଣିବାକୁ ସେ ଭିଡଠେଲି ପଶିବାକୁ ଚେଷ୍ଟାକଲେ । କେବେ ଏତେ ଲୋକ ସକାଳୁ ସକାଳୁ ଗୋଟେ ଜାଗାରେ ଏକାଠି ନହେଉଥିବା ବେଳେ, ହଠାତ୍ ଛକଟିରେ ଏତେ ଲୋକ ତାଙ୍କ ମନରେ ଉତ୍ସୁକତା ସୃଷ୍ଟିକରିଥିଲା । ମାଛ ହାଟର ସ୍ଥାନ ହୋଇଥିଲେ, ସେ ଆଦୌ ସେ ଆଡକୁ ଚାହିଁନଥାନ୍ତେ ।

ହଠାତ୍ ଚମକି ପଡିଲେ ଅରବିନ୍ଦ । ଆଃ, କି ବିଭତ୍ସ ଦୃଶ୍ୟ ଦି ଚାରିଖଣ୍ଡକରି କାଟି ପକାଇଥିବା ରକ୍ତ ଜୁବୁବୁବୁ ମଣିଷର ଶରୀରଟିଏ । ଦେହର ଲୋଚାକୋଚା ଚମ ଓ ମୁଣ୍ଡବାଳ ରଙ୍ଗରୁ ବାର୍ଦ୍ଧକ୍ୟ ବାରିହୋଇ ପଡୁଥାଏ । ଆଉ କେତେ ଦିନ ଅବା ଲୋକଟା ବଞ୍ଚିଥାନ୍ତା ? ଜୀବନ ଦୀପ ଲିଭି ଆସିବାପୂର୍ବରୁ କିଏ ଏହି ନୃଶଂସ ପଶୁ ?

ଭାବି ପାରିଲେନି ଅରବିନ୍ଦ । ସେ ମଡା ଦେଖିଛନ୍ତି । ମୃତ ଶବକୁ ନେଇ ନିର୍ଜନ, ଶୂନ୍‌ଶାନ୍ ମଶାଣୀରେ ପୋଡିଛନ୍ତି । ବିଲୁଆ, ଶାଗୁଣା ମଡାକୁ କୁଣି ଖାଉଥିବାର ସେ ଦେଖିଛନ୍ତି । ଥରେ ନୁହେଁ, ଅନେକଥର । ଯେ ଯେତେବେଳେ ତାଙ୍କୁ ମଡା ଭାଇ ହେବାକୁ ଡାକିଛି, ସେ କେବେ ମନା କରିନାହାନ୍ତି । ନିଜ କାନ୍ଧରେ ବୋହି ନେଇଛନ୍ତି ଦିଖଣ୍ଡ ବାଉଁଶରେ ବନ୍ଧା ହୋଇଥିବା କୋକେଇକୁ । ନିଆଁ ଲଗାଇ ପୋଡିବା ବେଳେ ମୃତ ଦେହଟାକୁ ଜଳି ପୋଡି ପାଉଁଶ ହୋଇଯିବା ପାଇଁ ସେ ଅନେକ ଥର ଖେଞ୍ଚାଖେଞ୍ଚି କରିଛନ୍ତି । କିନ୍ତୁ ଏମିତି ବିଭତ୍ସ ଶରୀର.......

ଆଖି ବୁଜି ହୋଇ ଆସୁଥିଲା ତାଙ୍କର । ସୂର୍ଯ୍ୟଙ୍କର ସୁନେଲି କିରଣ ଚିରହିତ ବୃକ୍ଷରାଜି ଉପରେ ତାର ଶୋଭାକୁ ଦ୍ୱିଗୁଣିତକରି ଗଢି ଉଠୁଥିବା ବେଳେ ପ୍ରକୃତି କୋଳରେ ଏଇ ଦୃଶ୍ୟ ରାସ୍ତାକଡରେ ଛେଳିମାନଙ୍କୁ ହାଣି ମାଂସ ବିକୁଥିବା କଂସେଇଠାରୁ ଆହୁରି ନିଷ୍ଠୁର ଓ ନିର୍ମମ ମନେ ହେଉଥିଲା । ମନରେ ଅନେକ ଅସମାହିତ ପ୍ରଶ୍ନ । ଜଣେ ବୃଦ୍ଧକୁ ହତ୍ୟାକରି ଖଣ୍ଡ ଖଣ୍ଡ ପରିବା ପରି କାଟି ରାସ୍ତାକଡରେ ପକାଇ ଦେବାର କଣ ଉଦ୍ଦେଶ୍ୟ ହୋଇପାରେ ?

ସକାଳୁଆ ସୁଲୁସୁଲୁ ପବନ ଉପଭୋଗ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ପାରୁନଥିଲା । ସେ ଅନ୍ୟମନସ୍କ ଭାବେ ଫେରି ଆସି ନଥିକରି ଦାଣ୍ଡବାରଣ୍ଡାରେ ପଡିଥିବା ଚୌକୀ ଉପରେ ବସିପଡିଲେ ।ହକର ଦେଇଯାଇଥିବା ସମ୍ବାଦ ପତ୍ର ଓଲଟାଇ ଦେବାମାତ୍ରେ ପୁଣି ସେହି ବିଭତ୍ସ ଦୃଶ୍ୟର ଉତ୍ତୋଳିତଚିତ୍ର ତାଙ୍କ ଆଖି ଆଗରେ ମେଲି ହୋଇଗଲା ।

ସେ ସେଠାରେ ମୃତଲୋକଟିର ମୁହଁଟି ଦେଖି ନଥିଲେ କିନ୍ତୁ ଖବର କାଗଜରେ ମୁହଁଟି ଦେଖି ଚମକି ପଡିଲେ ।

ଆରେ, ଏତ ହଗୁରି ନାଏକ । ଆମ ଏଇ ନିକଟରେ ଥିବା ବସ୍ତିରେ ରହି ସେଓ ବିକୁଥିବା ବୁଢ଼ାବିକାଳୀ ।

ସମ୍ବାଦରେ ପଢିବାକୁ ବିଶେଷ କିଛି ନଥିଲା । କିନ୍ତୁ ଅରବିନ୍ଦ ନିଜ ସ୍ମୃତିରେ ସଯତ୍ନ ସାଇତି ରଖିଥିବା ହଗୁରି ନାଏକର ଜୀବନ କାହାଣୀ ପବନରେ ବହିପୃଷ୍ଠା ଫଡ୍ ଫଡ୍ ହୋଇ ଖୋଲି ଯିବାପରି ଉନ୍ମୁକ୍ତ ହୋଇ ଉଠିଥିଲା । ସ୍ୱାଧୀନତା ଦିବସ ଦିନ କାନ୍ଧରେ ତ୍ରିରଙ୍ଗା ପତାକା ଝୁଲାଇ ସେଓ ନେବ ସେଓ ଡାକି ଡାକି ଯିବା ବେଳେ ଅରବିନ୍ଦ ତାକୁ ଡାକ ପକାଇଲେ ।

ହଇହୋ ନାଏକେ । ଆସ ଇଆଡେ । ଦି କିଲୋ ସେଓ ଦେଇଯାଅ । ଆଉ ତିନିଦିନ ଗଲେ ଜନ୍ମାଷ୍ଟମୀ ।

ମୁଣ୍ଡରୁ ବୋଝ ଓହ୍ଲାଇ ବସି ପଡିଲା ପିଣ୍ଡା ଉପରେ । ବୟସରେ ଭାଙ୍ଗି ପଡୁଥିଲା ଦେହ । କାନ୍ଧରେ ଲାଗିଥିବା ପତକାକୁ ଡେରିଦେଇ କହିଲା, ବାବୁ ! ଭଲ ସେଓ ପାଞ୍ଚ କିଲୋ ରଖ ।

ନା, ଦି କିଲୋ ଦିଅ । ଆରେ, ରିଟାୟର୍ଡ କଲାପରେ ପେନ୍‌ସନ୍ ଟଙ୍କାରେ ଚଳିବାକୁ ହୁଏ । ତୁମେ କଣ ଏତକ ଜାଣନି । ହଁ କାନ୍ଧରେ ଜାତୀୟ ପତାକା କାହିଁକି ?

ଆଜ୍ଞା, ଠିକ୍ କହିଲେ । ପେନ୍‌ସନ୍ ଭୋଗୀ ଲୋକର ଆଉ ଇଚ୍ଛା କଣ ? ଆଜି ସ୍ୱାଧୀନତା ଦିବସ । କେତେ କଷ୍ଟରେ, କେତେ ଦୁଃଖ ଏ ଦିହ ନିଭାଇଛି ଦେଶକୁ ସ୍ୱାଧୀନ କରିବାପାଇଁ । ତାକୁ ମନେ ରଖିବାକୁ ଆଜି ଏଇ ପତାକାଧରି ବୁଲୁଛି ।

ସେ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ଯୁଦ୍ଧରେ ସେ ଅଂଶ ଗ୍ରହଣ କରିଥିବାକୁ ଶୁଣି ଅରବିନ୍ଦ ଚକିତ ହୋଇ ସ୍ନେହ ଓ ଶ୍ରଦ୍ଧାକୁ ଆଖିରେ ତାକୁ ଚାହିଁଲେ ।

କେବେହେଲେ କାହାରି ଭଲମନ୍ଦ ବିଷୟରେ ଜାଣିବାକୁ ଚାହିଁନଥିବା ଅରବିନ୍ଦ ଏଇ ସାଧାରଣ ମଣିଷଟିର ଅସାଧାରଣର କୃତିତ୍ୱ ଓ ଦେଶପ୍ରେମ ସମ୍ପର୍କରେ ଜାଣିବାକୁ ଆଗ୍ରହ ପ୍ରକାଶ କରି କହିଲେ, ହଇ ଓ ନାଏକେ ! ତୁମେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲ ଅଥଚ ଆଜି ରାସ୍ତାରେ ଫଳବିକି ଜୀବନ ବଂଚୁଛ । ତା ପୁଣି ଏ ବିଷୟରେ ଟିକିଏ ତୁମ ଜୀବନ କାହାଣୀ ?

ହଇ ହୋ ଶୁଣୁଛ । ଦିକପ୍ ଚାଅ ଦିଅ । ବଡ ପାଟିରେ ଡାକ ଛାଡିଲେ । ଦୀର୍ଘ ଚାଳିଶ ବର୍ଷଧରି ସ୍ୱର ସହିତ ପରିଚିତ ଥିବା ପଦ୍ମାସୁରମାଟା ଦୁଇକପ୍ ଥୋଇ ଦେଇ ଯିବାବେଳେ ତୀର୍ଯ୍ୟକ ଚାହାଁଣୀରେ ଏଇ ଦୁଇବୁଢାଙ୍କୁ ଚାହିଁବାକୁ ଭୁଲିନଥିଲେ ।

ଏ କଣ ଭାଗବତର ବାଣୀ ନା ଅନ୍ୟକିଛି ଏହା ହଗୁରି ନାଏକର କଥା ଶୁଣି ମନ୍ତ୍ର ମୁଗ୍ଧ ଭାବେ ଭାବୁଥିଲେ ଅରବିନ୍ଦ ।

ହଗୁରି ନା ଏକ ଜିମିତି ଜନ୍ମହେବାପରେ ହଗି ହେଉଥିବାରୁ ତା ବାପା ତା ନାଁ ହଗୁରି ରଖିଲେ, ପାଠ ପଢା ଛାଡି ସେ କିପରି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଜେଲ ଗଲେ ଓ ଜେଲର ଯନ୍ତ୍ରଣାଦାୟକ ଜୀବନ କହିବା ବେଳେ ଚମ ଧୁଡୁଧୁଡୁ କୋରଡରେ ପଶିଯାଇଥିବା ଆଖି ଦୁଇଟି ଦାଉ ଦାଉ ହୋଇ ଜଳି ଉଠୁଥିଲା ।

ହଗୁରି କହିଲା, ବୁଝିଲେ ବାବୁ; ନୀଳଗିରି ହାଇସ୍କୁଲ ହତାରୁ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଆମେ ଯୋଉଦିନ ବିଦେଶୀ ଲୁଗା ପୋଡିବାକୁ ବାହାରିଗଲୁ, ଓହୋ, ସେଦିନ କି ମାଡ । ପିଠିରୁ ଚମ ଉଠିଗଲା । ରାସ୍ତାରେ ଘୋଷାଡି ଘୋଷାଡି ଆମକୁ ନେବାବେଳେ ଜୟ ଭାରତ ମାତାକୀ ଜୟ, ଜୟ ମହାତ୍ମାଗାନ୍ଧୀ କି ଜୟ, ଆମ ପାଟିରୁ ଅନବରତ ବାହାରି ଚାଲିଥିଲା ।

ଆଜକୁ ୬୦ ବର୍ଷ ହେଲା । ଦେଶ ସ୍ୱାଧିନ ହେବାପରେ ଆମକୁ ସଭିଏଁ ଭୁଲିଗଲେ । ପୈତୃକ ଜମିବାଡିକୁ ବିକି ସାରିଥିଲି । ହାତରେ କିଛି ନଥିଲା । ବହୁକଷ୍ଟରେ ଜୀବନ ବଞ୍ଚାଇବାକୁ ନିଳଗିରିରୁ ଆସି ରାଜଧାନୀରେ ଫଳ ଦୋକାନ କଲି । ଆପଣ ଦେଖୁଛନ୍ତି । ଉଠଦୋକାନ । ତା ସାଙ୍ଗକୁ ପୁଲିସ୍‌ର ଜୁଲୁମ୍ । ଚାନ୍ଦା, ବଟି ଆଦାୟ ।

ବାବୁ; କଣ କହିବି । ନେତା ହୋଇ ପାରିଲିନି । ସ୍ତ୍ରୀ ରହିଲାନି । ପୁଅକୁ ମଣିଷ କରିବା ପାଇଁ ଯେତେ ପରିଶ୍ରମ । ହେଲେ କଣ ହେବ ମୋ ଜୀବନ ଭିତରେ ସେ ନିଜକୁ ଖାପ୍ ଖୁଆଇ ପାରୁନି ।ବଡ ହେଲାଣି । ଭେଣ୍ଡାଟିଏ । ନା ବ୍ୟବସାୟ ନା ପାଠ । କିଛି କରିବାର ଆଗ୍ରହ ନାହିଁ । ମୋରି ରୋଜଗାରରେ ଗଞ୍ଜେଇ ମଦ, ଚରସ୍ ସିନେମା ଶେଷକୁ ଦାରୀ.... ଗାଁ ଗଣ୍ଡା ଛାଡି ତାକୁ ମଣିଷ କରିବାକୁ ଆସି ରହିଲି ରାଜଧାନୀ ବସ୍ତୀରେ । ମୁଣ୍ଡରେ ଫଳ ବୋହି ବିକିଲି । କଣ କହିବି ସେ କଥା । ହେଲେ ପୁଅଟା ଅମଣିଷ ହୋଇଗଲା ବାବୁ । କହିଲେ କିଛି ହାତ ଉଠାଇଦେବ ।

ଆଖିରେ ଲୁହ ଜକେଇ ଆସୁଥାଏ ।

ସେଓ ଦୁଇକିଲୋ ଥୋଇ ଦେଇ ଟଙ୍କା ନେଇ ଯିବାବେଳେ କହିଲା, ଆଉ ବଂଚିବାକୁ ମନ ନାହିଁ । ଅନେକ ବଂଚିଲି । ପ୍ରଭୁଙ୍କୁ ଡାକୁଛି, ଚଞ୍ଚଳ ଏ ଜୀବ ଯାଉ । କାନ୍ଧରେ ତ୍ରିରଙ୍ଗ ପତାକା ପକାଇ ସେଓ ନେବ ସେଓ ଡାକି ଡାକି ଆଗରେ ଗଲା ହଗରୁ ନାଏକ ।

ଏଇ ଦି ଦିନ ତଳର କଥା ।

ଅରବିନ୍ଦ ଆଖି ଆଗରେ ହଗୁରି ନାଏକର ମୁହଁ ଦେଖାଯାଉଥିଲା । ଦିନ ୯ଟା ବାଜିଗଲାଣି । ଆଜି ତୁମେ ପରା ଉପାସ କରିବ । ଜନ୍ମାଷ୍ଟମୀ । ଏଇ ଫଳଟା ଖାଇଦିଅ । ଉପାସରେ ରହିଲେ ଦେହ ଖରାପ ହେବ । ଏତକ କହି ପତ୍ନୀ ସୁରମା ଚାରି ଖଣ୍ଡରେ କଟା ହୋଇଥିବା ସେଓକୁ ପ୍ଲେଟରେ ତାଙ୍କ ଆଗରେ ଥୋଇ ଦେଲେ ।

ଅରବିନ୍ଦ ପତ୍ନୀଙ୍କୁ ଆବାକାବା ହୋଇ ଚାହିଁଲେ । ଆଖିଆଗରେ ଚାରିଖଣ୍ଡ ହୋଇ କଟା ହୋଇଥିବା ହଗୁରି ନାଏକ ର ଦେହ ତାଙ୍କୁ ତାସଲ୍ୟଭରା କଣ୍ଠରେ କହୁଥିଲା, ଆଜି ଶ୍ରୀକୃଷ୍ଣଙ୍କ ଜନ୍ମଦନ ପରା ଜନ୍ମାଷ୍ଟମୀ ।



# ମୁଁ ଯଦି ସହିଦ ହୋଇଥାନ୍ତି

ମୁଁ ଯଦି ସହିଦ ହୋଇଥାନ୍ତି କେତେ ଭଲ ହୋଇନଥାନ୍ତା ସତେ । କିନ୍ତୁ ମୁଁ କଣ ସତରେ ସହିଦ ହେବାକୁ ଚାହୁଁଛି ? କେତେଲୋକ ସହିଦ ହେବାକୁ ଚାହୁଁଛନ୍ତି ଯେ ? ଏହା ହେବା କଣ ଏତେ ସହଜ । ଦେଶ ପାଇଁ ସହିଦ ହେବା, ଏହା କଣ କମ୍ କଷ୍ଟ କାମ କି ! କେତେକ ସହିଦ ହେବାକୁ ଚାହାଁନ୍ତି, କିନ୍ତୁ ଶତ୍ରୁପକ୍ଷ ସହିଦ ହେବାକୁ ମୌକା ଦେଲେ ତ ! ଶତ୍ରୁ ଯଦି ସମସ୍ତଙ୍କୁ ଏମିତି ସେମିତି ସହିଦ କରିଦେବେ, ତେବେ ସେ କିମିତିକା ଶତ୍ରୁ ! ପାକିସ୍ତାନ ମୋତେ ଶତ୍ରୁ ବୋଲି ଭାବିଲା ନାହିଁ । ମୁଁ ବାରମ୍ବାର ସହିଦ ହେବାରୁ ବଂଚିଗଲି ।

ମୁଁ ସେତେବେଳେ ୧୪ ବର୍ଷର ବାଳକ । ଭାରତ ଚୀନ ଯୁଦ୍ଧ ହେଲା । ମୁଁ ହାତରେ ଡବା ଧରି ସହର ସାରା ପଇଁତରା ମାରିଲି ସହିଦ ପାଣ୍ଠି ସଂଗ୍ରହରେ । ମୋ ମନରେ ତ ଆଦୌ ଦୁଃଖ ନଥିଲା । ମରୁଥିବା ଲୋକମାନଙ୍କ ପାଇଁ ତ ଦୁଃଖ ହୋଇଥାନ୍ତା । କେତେବର୍ଷର ପିଲା କି ମୁଁ । ହଁ, ଦିନସାରା ଖରାରେ ଡବା ଧରି ବୁଲିବାର ଦୁଃଖ ଅବଶ୍ୟ ମୋତେ ଲାଗୁଥିଲା ।

ପୁଣି ଯୁଦ୍ଧ ହେଲା ୧୯୬୫ ମସିହାରେ । ଭାରତ-ପାକିସ୍ତାନ ଲଢେଇ । ମନ ହେଲା ସୈନିକ ହେଇଯିବି । ସୈନିକ ପୋଷାକ ମୋତେ ବେଶ୍ ମାନିବ । କାନ୍ଧରେ ବନ୍ଧୁକ ପକାଇ ମାର୍ଚ୍ଚିଂ କରିବି । ସେ ସୌଭାଗ୍ୟ ମଧ ମୋର ହେଲାନାହିଁ । ମୋର ବୟସ ୧୭ ପୂରିଥାଏ । ଚାକିରି ମିଳିଲା ନାହିଁ । କେମିତି ସହିଦ ହୋଇଥାନ୍ତି । ସୈନିକ ସିନା ହୋଇପାରିଲି ନାହିଁ । କିନ୍ତୁ ମନରେ ସହିଦ ହେବାର ଆଶା ମଧ ଢଳିଲା ନାହିଁ । ସୁଯୋଗ ମଧ ବାରମ୍ବାର ଆସିଲା । ୧୯୭୧ ମସିହା । ମୁଁ ଚାକିରି ଖୋଜୁଥାଏ । କିନ୍ତୁ ଦେଶ ପାଇଁ ଜୀବନ ଦେଇ ସୈନିକ ବିଭାଗରେ ପଶିବି ଏକଥା

ମୋ ମନକୁ ଆଦୌ ପଶୁନଥାଏ । ଯଦି ତାହା ମୋ ମନକୁ ଆସିଥାନ୍ତା ତେବେ ମୁଁ କଣ ମୋ ଚପଲକୁ ଘୋଷାରି ଘୋଷାରି ସହରର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଚାକିରି ପାଇଁ ଘୂରିଥାନ୍ତି । ମୋ ଚପଲ ଘୋରି ହେଇଗଲା । ଦେଶ ସହିଦ ହେବାକୁ ବେଶି ପସନ୍ଦ କଲା ସିନା, ମୋର ସହିଦ ହୋଇବା ନୋହିଲା । ସେଇଦିନଠୁ ଦେଶ ସହିଦ ହେବାରେ ଲାଗିଛି । ମୁଁ ତାକୁ ଜାଣିଶୁଣି ସାହାଯ୍ୟ କରୁଛି ସହିଦ ହେବାରେ ।

କାରଗିଲରେ ଯୁଦ୍ଧ ଆରମ୍ଭ ହେଲା । ଢୋ ଢୋ କମାଣ ଫୁଟିଲା । ଗୁଳି ବାରୁଦ ବର୍ଷା ହେଲା । ମୁଁ ତ ଖବର କାଗଜର ଯୁଦ୍ଧ ସମ୍ବାଦ ଦାତା । ବୟସ ବି ମୋର ଶେଷହୋଇ ଆସିଲାଣି । ଭାବିଥିଲି ବୋଧହୁଏ ଏଥର ଦେଶ କହିବ, ମୋ ପାଇଁ ସହିଦ ହୋଇଯା । ମୋତେ କୁହାଗଲା, ଯାଆ କାରଗିଲ । ମୋତେ ମୌକା ମିଳିଗଲା । ଭାବିଲି ଏଥରକ ସହିଦ ହେବାର ସୁଯୋଗ ଅଛି । ଏ ସୁଯୋଗକୁ ହାତଛଡା କରିବା ନୁହେଁ । କିନ୍ତୁ ଏମିତି ସେମିତି ଜୀବନକୁ କାହିଁକି ବାଜି ଲଗାଇବି । ଧରାଧରି କରି ଖସିଗଲି । କାରଗିଲ ଯିବା ହେଲାନାହିଁ । ସହିଦ ହେବାରୁ ବର୍ତ୍ତିଗଲି । ମୁଁ କଣ କେବଳ ବଞ୍ଚିଲି, ମୋ ପରି ସମ୍ବାଦ ଦାତା ବଂଧୁମାନେ, ଯେଉଁମାନେ ନିତିଦିନ ସହିଦ ହେବା ପାଇଁ ଦେଶ ପାଇଁ ଘୋଷଣା ପରେ ଘୋଷଣା କରୁଛନ୍ତି, ସେମାନେ ମଧ ବଞ୍ଚିଗଲେ । ଅବଶ୍ୟ ମୋତେ ଏକ ବିରାଟ ରିପୋର୍ଟ ଲେଖି ଖବର କାଗଜରେ ମଝିକାଗଜ ପୃଷ୍ଠାକୁ ମଣ୍ଡିତ କରିବାକୁ ହେଲା । ଦେଶ ସହିଦ ହେବାର ଗୌରବଗାଥା ଏଥିରେ ବର୍ଣ୍ଣିତ ହୋଇଥିଲା ।

ମୋର ତ ସବୁବେଳେ ଚିନ୍ତା କେମିତି ମୋର ନାଁ ହେବ । ଏତେଦିନ ସାହିତ୍ୟ କରି ତ ନାଁ ହେଲା ନାହିଁ, ସହିଦ ହୋଇଗଲେ ହୁଏତ ଦେଶ ଇତିହାସରେ ନାଁ ରହିଯିବ । ଦେଶ ସହିତ ସାହିତ୍ୟ ଯୋଡା । ମୁଁ ଦେଶ ପାଇଁ ସହିଦ ହୋଇଗଲେ, ମୋର ସାହିତ୍ୟିକ ବଂଧୁମାନେ, ଏପରିକି ଯେଉଁମାନେ ମୋତେ ସାହିତ୍ୟିକ ବୋଲି ଭାବୁ ନାହାନ୍ତି, ନିଶ୍ଚୟ କହିଥାନ୍ତେ ଯାହାହେଉ ତାଙ୍କ ଗୋଷ୍ଠୀର ଲୋକଟିଏ ସହିଦ ହୋଇଗଲା । ଶୋକ ସଭାଟିଏ କରି ମୋର ଯେତେଯେତେ ଗୁଣ, ଅଗୁଣ, ବିଗୁଣ ମାନ ଅଛି, ତାର ଢେର ସାରା ପ୍ରଶଂସା କରିଥାନ୍ତେ । ମୋ ଫଟୋ ଉପରେ ଅତ୍ୟନ୍ତ ମାର୍ମିକ ଭାବରେ ଫୁଲହାର କେତୋଟି ନିଶ୍ଚୟ ଚଢାଇ ଥାନ୍ତେ । ଖବର କାଗଜ ପୃଷ୍ଠାରେ ଦେଶପାଇଁ ସହିଦ ହୋଇଥିବା ସାହିତ୍ୟିକ ବୋଲି ଶୋକବାର୍ତ୍ତା ମାନ ନିଶ୍ଚୟ ବାହାରିଥାନ୍ତା । କିନ୍ତୁ ମୁଁ ତ ସହିଦ ହେଲିନାହିଁ ।

ମୋର ମଧ ସହିଦ ନ ହେବାର ଦୁଃଖ ରହିଲା ନାହିଁ । ସହିଦ ହେବା ଅବଶ୍ୟ ବଡ ମହଗଗ ବ୍ୟାପାର । କିନ୍ତୁ ସହଜରେ ଯଦି ସହିଦ ହେବାର ସୁଯୋଗ ମିଳେ, ତାକୁ କିଏ କାହିଁକି ହାତଛଡା କରିବ । ପ୍ଲେଟରେ ବଢାଯାଇ ଯଚା ଯାଉଥିବା ଖାଦ୍ୟକୁ ସିନା ମନା କରାଯାଇ ପାରେନା, କିନ୍ତୁ ପ୍ଲେଟରେ ସିନା କେହି ଯାଚିଲେ । ଏ ଯାବତ୍ ମୋତେ କେହି ପଚାରୁନାହାନ୍ତି ଯେ ତୁମେ କଣ ସହିଦ ହେବ କି ? ମୋତେ ମୋର ପସନ୍ଦ, ଅପସନ୍ଦ ବା ନାପସନ୍ଦ କଥା ପଚାରିଥିଲେ ସିନା ମୁଁ କହିଥାନ୍ତି, ହଁ, ମୋର ସହିଦ ହେବାର ଇଚ୍ଛା ଅଛି । ମୁଁ ଆଦୌ ମନା କରି ନଥାନ୍ତି । ଏମିତି

ସୁଯୋଗ କେତେଜଣଙ୍କ ଭାଗ୍ୟରେ ଜୁଟେ । ହାତରେ ପାଉ ପାଉ ହାତଛଡା ହୋଇ ଗଲେ ଦୁଃଖ ହେବ ହିଁ ହେବ ।

ମୁଁ ଯଦି ସହିଦ ହୋଇ ଯାଇଥାନ୍ତି ତେବେ ଦେଶରେ ଥିବା ମୋର ପ୍ରିୟ ନେତାଗଣ ନିଶ୍ଚିତ ଭାବେ ମୋ ଉପରେ ଦୀର୍ଘ, ନାତିଦୀର୍ଘ ଭାଷଣମାନ ପ୍ରଦାନ କରିଥାନ୍ତେ । ମୋତେ ସହିଦ ଭଗତ ସିଂହଙ୍କ ନାମ ସହିତ ଯୋଡିଥାନ୍ତେ । ମୋର ଶ୍ରଦ୍ଧାଞ୍ଜଳି ସଭା ସୂଚନା ଭବନର ଶୀତତାପ ନିୟନ୍ତ୍ରିତ କକ୍ଷରେ ଓ ଦିଲ୍ଲୀର ମାଉଲଙ୍କର ହଲରେ ନିଶ୍ଚେ ଅନୁଷ୍ଠିତ ହୋଇଥାନ୍ତା । ମୋର ସୁନ୍ଦର ପୂର୍ଣ୍ଣ ଅବୟବ ଥିବା ଫଟୋଚିତ୍ରକୁ ବିରାଟ ପୁଷ୍ପମାଲ୍ୟରେ ଭୂଷିତ କରି ମଞ୍ଚ ଉପରେ ସଯତ୍ନେ ଧୂପଦୀପରେ ସୁଶୋଭିତ କରି ରଖା ଯାଇଥାନ୍ତା । ମୋ ଭାଗ୍ୟରେ ଯଦି ସହିଦ ଭଗତସିଂ ବା ଅନ୍ୟ ସେପରି କେହିଙ୍କ ନାମ ଯୋଡି ହୋଇ ଯାଇଥାନ୍ତା, ତେବେ ମୋର କିଛି କ୍ଷତି ହୋଇ ଯାଇନଥାନ୍ତା । ମୋ ପାଇଁ କିଛି ଅଘଟଣ ଘଟି ନଥାନ୍ତା । ମୋର ତ ଆନନ୍ଦ କହିଲେ ନସରେ ହୋଇ ଯାଇଥାନ୍ତା । ମୁଁ ଜଣେ ଦେଶପ୍ରେମୀ ଭାରତୀୟର ମାନ୍ୟତାରେ ଭୂଷିତ ହୋଇଥାନ୍ତି । କିନ୍ତୁ ଏହା ଯେ ଆଦୌ ହେଲାନାହିଁ । ସବୁପାଣି ଫୋଟକା ପରି ମିଳାଇଗଲା । ମୁଁ ସହିଦ ହେଲି ନାହିଁ ବା ମୋତେ ସହିଦ ହେବାର ସୁଯୋଗ ମିଳିଲା ନାହିଁ ।

ମୁଁ ସହିଦ ନହେବାରୁ ମୋତେ ତ ନିଶ୍ଚିତ ଦୁଃଖ ହେଲା କିନ୍ତୁ ମୋ ସହିଦ ନହେବାରୁ ମୋ ସ୍ତ୍ରୀଙ୍କୁ ଅବଶ୍ୟ ଏହାର ଲାଭ ମିଳିଲା । ମୋଠାରୁ ଯାବତୀୟ ଯନ୍ତ୍ରଣା ଭୋଗ କରି ମଧ ସେ ବିଧବା ନହୋଇ ସଧବା ହୋଇ ରହିଲେ । ତାଙ୍କ ମୁଣ୍ଡରେ ସେଇମିତି ସିନ୍ଦୂର ବିନ୍ଦୁ ଦାଉଦାଉ ହୋଇ ଜଳିଲା । ହାତରେ ଢେରସାରା କାଚର ଲହଡି ଭାଙ୍ଗିଲା । କିନ୍ତୁ ପ୍ରକୃତ ପକ୍ଷେ ମୁଁ ସହିଦ ହୋଇଥିଲେ ତାଙ୍କୁ ଯେଉଁ ଗୌରବ ସହିଦର ପତ୍ନୀଭାବେ ମିଳିଥାନ୍ତା, ସେଥିରୁ ସେ ବଂଚିତ ହେଲେ । ତାଙ୍କୁ ଏହା ତ ମାଗଣାରେ ମିଳି ଯାଇଥାନ୍ତା । ଏହା କେବେ ବି ତାଙ୍କ କଳ୍ପନାରେ ନଥାନ୍ତା । ବିଚରା ପତ୍ନୀ ମୋର କେବେ କଣ ଭାବିଛି ଯେ ତାଙ୍କର ସାହିତ୍ୟିକ ସ୍ୱାମୀ ରାତିରାତି ଅନିଦ୍ରା ରହି ଯେତେଲେଖିଲେ ବି ସାହିତ୍ୟ ଏକାଡେମୀ ପୁରସ୍କାର ମିଳିବ ନାହିଁ କିନ୍ତୁ ଏବେ ତ ସେ ସହିଦଙ୍କର ପତ୍ନୀ ହେବାର ସୌଭାଗ୍ୟ ପାଇଥାନ୍ତେ । ଆର୍ଥିକ ଲାଭ ମଧ ମିଳିଥାନ୍ତା ଢେର ସାରା । ସାହିତ୍ୟ ଏକାଡେମୀ ପୁରସ୍କାର ଅର୍ଥ ତା ଆଗରେ ଫିକା ପଡିଯାଇଥାନ୍ତା ।

କିନ୍ତୁ ମୋ ସ୍ତ୍ରୀ କେବେ ପଡୋଶୀଙ୍କ ଆଗରେ ନିଜ ସ୍ୱାମୀଙ୍କ ବାହାଦୂରୀ ଗପି ନାହାନ୍ତି; ସେ କଣ କହିଥାନ୍ତେ ସମ୍ବାଦଦାତା ମାନଙ୍କୁ । କିମିତି ଲାଭ ଉଠାଯାଏ, ତାଙ୍କୁ ସେ ବିଦ୍ୟା ଅମାଲୁମ । ଯଦି ସେ ବିଦ୍ୟା ମାଲୁମ ଥାଆନ୍ତା, ତେବେ ସଫାଧଳା ଶାଢୀରେ ନିଜ ଦେହକୁ ଗୁଡାଇ କ୍ୟାମେରା ସମ୍ମୁଖରେ ବାହୁନି ବାହୁନି କହିଥାନ୍ତେ, "ଏ ଦେଶ ପାଇଁ ସହିଦ ହେବାର ଗୌରବ ଯେପରି ମୋ ସ୍ୱାମୀଙ୍କୁ ମିଳିଲା, ସେ ଗୌରବ ପାଇବା ପାଇଁ ମୋର ଦୁଇ ପୁତ୍ରକୁ ମଧ ମୁଁ କାରଗିଲ କୁ ପଠାଇବି ।"

ସେ ଏକଦମ୍ ଡରପୋକ, ଲାଜକୁଳୀ । ତାଙ୍କର ଏତେ ସାହସ ଓ ଦମ୍ଭ କାହିଁ ଯେ ସେ

ପଡୋଶୀମାନେ ମୋ ନାଁରେ ଆଚାର୍ଯ୍ୟବିହାର ଛକକୁ ନାମିତ କରି ମୋର ଷ୍ଟାଚ୍ୟୁ ସ୍ଥାପନ ଉତ୍ସବରେ ଯୋଗ ଦେଉଥାନ୍ତେ କି ନାହିଁ ।

ମୁଁ ସହିଦ ହୋଇଥିଲେ ଆଚାର୍ଯ୍ୟ ବିହାର ଛକ (ଜାତୀୟ ରାଜପଥ) ଉପରେ ମୋର ଷ୍ଟାଚ୍ୟୁକୁ ସଦର୍ପରେ ଠିଆ କରାଇ ଦିଆଯାଇଥାନ୍ତା । ଆଉ କାହାକୁ କାରଗିଲ୍‌ରେ ସହିଦ ହେବାର ସୌଭାଗ୍ୟ ମୋ ଅଞ୍ଚଳରୁ ମିଳିଥାନ୍ତା କି ନାହିଁ ତାହା ତ ଜଣା ନାହିଁ । ମୋ ଏରିଆର ନାମ ଗଜପତି ନଗର ନହୋଇ  ସୌରୀ ନଗର ହୋଇଥାନ୍ତା । ନିଜ ପକେଟରୁ ଟଙ୍କାଟିଏ ଅବଶ୍ୟ ଖସି ନଥାନ୍ତା କିନ୍ତୁ ଭଲ ମୋଟା ଅଙ୍କର ଚାନ୍ଦା ନିଶ୍ଚେ ଆଦାୟ ହୋଇଥାନ୍ତା । କେହି କେହି ଅବଶ୍ୟ କହିଥାନ୍ତେ । ଆଜି ନୁହେଁ, କାଲି ଆସ । ପାଖରେ ଆଦୌ ଟଙ୍କାଟିଏ ବି ନାହିଁ ।

ଚାନ୍ଦା ସମିତିର ସ୍ୱଦସ୍ୟମାନେ ବି ନଛୋଡ଼ବନ୍ଧା ପୁଣି ଯାଇଥାନ୍ତେ ଏବଂ ବାରମ୍ବାର ଫେରିଥାନ୍ତେ । ସହିଦ ମାନଙ୍କପାଇଁ କଷ୍ଟ ସହିବା ତାଙ୍କର ତ ଧର୍ମ । ଶେଷକୁ ଚାନ୍ଦାବାଲାଙ୍କ ହାତରୁ ମୁକୁଳିବା ପାଇଁ ଦଶଟଙ୍କାର ନୋଟ ଘର ଭିତରୁ ଘରବାଲି ହାତରେ ପଠେଇ ଦେଇ କହିବେ । ଦେଇ ଦିଅ ଏହି ଦଶଟଙ୍କା । କାହିଁକି ଯେ ଲୋକମାନେ ଦେଶ ପାଇଁ ସହିଦ ହୁଅନ୍ତି କେଜାଣି ?

ଆଉ କେତେକ କହିବେ, ଠିକ୍ ଅଛି ବାବୁମାନେ ତୁମେ ସବୁ ଚାନ୍ଦା ଆଦାୟ କରନ୍ତୁ । ସହିଦ ସୌରୀବଂଧୁ ଅବଶ୍ୟ ଜଣେ ଜଣାଶୁଣା ସ୍ତମ୍ଭକାର । କିନ୍ତୁ ଆମ ଅଞ୍ଚଳ ବିଷୟରେ କାହିଁ କେବେ ପଦେ ହେଲେ ତ ଲେଖିନାହାନ୍ତି । ସେମିତି ଲୋକଟା ସହିଦ ହେଇଗଲା ଯେ ଭାସିଗଲା ସବୁ ଯେମିତି । ସେ ହୁଏତ ଦେଶପାଇଁ କିଛି କରିଥାଇ ପାରନ୍ତି ମାତ୍ର ଆମ ପାଇଁ ତ କିଛି କରିନାହାନ୍ତି । ତାଙ୍କର ସ୍ମୃତି ରକ୍ଷା ପାଇଁ ଆମେ ଚାନ୍ଦା ଦେବୁନି ।

କେତେକ ନିୟମିତ ଖବରକାଗଜ ପଢୁଥିବା ଲୋକ ସେ କେମିତି ସହିଦ ହେଲେ ବୋଲି ପ୍ରଶ୍ନ କରିବେ । ସେ ହୁଏତ ସରକାରୀ ଖର୍ଚ୍ଚରେ ସେଠିକି ଯାଇଥିବେ । ହୁଏତ ପାକିସ୍ଥାନୀ ଗୁଳି ତାଙ୍କ ଦେହରେ ଭୁଲକ୍ରମେ ବାଜି ଯାଇଥିବ । ତାଙ୍କୁ ଆପଣ ସହିଦ କହୁଛନ୍ତି କାହିଁକି ! ସହିଦ ହେବାର ଏହା କଣ ଅପମାନ ନୁହେଁ । ହଁ, ଚାନ୍ଦା ନେବାକୁ ଆସିଛନ୍ତି ତ ଚାନ୍ଦା ନେଇଯାନ୍ତୁ । କିନ୍ତୁ ଏପରିକା ଲୋକ ପାଇଁ ଚାନ୍ଦା ଦେବାକୁ ଆମ ମନ ଆଦୌ କହୁନାହିଁ ।

ଏଇମିତି କେତେ କଥା କେତେ ଲୋକଙ୍କ ଠାରୁ ବାହାରିବ । ଚାନ୍ଦା ଆଦାୟ ସମିତିର ଲୋକେ ଏସବୁ ସତ୍ତ୍ୱେ ଚାନ୍ଦା ଆଦାୟ କରୁଥିବେ । ସହିଦ ସୌରୀବଂଧୁଙ୍କ ଉଦ୍ଦେଶ୍ୟରେ ସୌରୀନଗର ନାମ କରଣ ହେବ । ତାଙ୍କର ପ୍ରତିମୂର୍ତ୍ତି ନିର୍ମିତ ହୋଇ ଛକ ଜାଗାରେ ସ୍ଥାପିତ ହେବ । ବିରାଟ ଏକ ସଭାହୋଇ ମହାମାନ୍ୟ ମନ୍ତ୍ରୀଙ୍କୁ ଡକାଯାଇ ଏସବୁ କାର୍ଯ୍ୟକୁ ସମ୍ପନ୍ନ କରାଯିବ । ଅଧାବାଟରୁ କାମକୁ ଛାଡନ୍ତି କେମିତି ନ୍ୟାସର ସଭ୍ୟମାନେ । ବହୁ ଅଭିଯୋଗ ସତ୍ତ୍ୱେ ସହିଦ ସୌରୀ ସ୍ମାରକ ସମିତି ତରଫରୁ କିଛି ଚାନ୍ଦା ଆଦାୟ ହୋଇଥିବ ନିଶ୍ଚୟ ।

ଟଙ୍କା ପଇସା ଯେଉଁଠି ଦୁର୍ନୀତି ସେଇଠି । ଦୁର୍ନୀତି ଯେଉଁଠି ଟଙ୍କା ପଇସା ମଧ୍ୟ ସେଇଠି । ଅବଶ୍ୟ ଚାନ୍ଦା ପରିମାଣକୁ ନେଇ ନ୍ୟାସ ସଭ୍ୟମାନଙ୍କ ମଧ୍ୟରେ ଟଣା ଓଟଣା ଲାଗିବ । ତଥାପି

ମୂର୍ତ୍ତି ପାଇଁ କୁଶଳୀ ଶିଳ୍ପୀକୁ ଖୋଜା ଯାଇ, ତାଙ୍କ ହାତରେ ଏ କାର୍ଯ୍ୟ କରିବାକୁ ଦାୟିତ୍ୱ ଅର୍ପଣ କରାଯିବ ।

ସେ କଳାକାର ମୋତେ ତ ଦେଖି ନାହାନ୍ତି । କିନ୍ତୁ ତିଆରି କରିବେ ସହିଦ ସୌରୀବଂଧୁର ମୂର୍ତ୍ତି । ମୋର ତ ସହିଦ ହେବାର ଆଦୌ ଇଚ୍ଛା ନଥିଲା । ମୂର୍ତ୍ତିକାରିଗର କେମିତି ଯେ ମୋ ମୂର୍ତ୍ତି ତିଆରି କରି ପାରିବ । ତାକୁ ନିଶ୍ଚୟ ଅସୁବିଧା ହେବ । ସେ ହୁଏତ ମୋର ଫଟୋ ଦେଖି ମୂର୍ତ୍ତି ତିଆରି କରିବ । ମୋ ଫଟୋ କଣ ସହିଦ ହେବାର ଫଟୋ । ଯଦି ସେ ମୋ ଫଟୋ ଦେଖି ପଥରରେ ମୋ ମୂର୍ତ୍ତି ତିଆରି କରେ, ତେବେ ସେ ମୂର୍ତ୍ତିଟି ନିଶ୍ଚେ ଅନ୍ୟ କାହାର ସିନା ହେବ, ମୋର ହେବ ଏହାର କୌଣସି ଗ୍ୟାରେଣ୍ଟି ନାହିଁ । ତଥାପି ମୂର୍ତ୍ତି ତିଆରି ହେବ । ମୂର୍ତ୍ତି ନିର୍ମାଣ ସରିବାପରେ ତାକୁ କେଉଁଠି ବିଧିବଦ୍ଧ ଭାବରେ ରଖାଯିବ, ପୁଣି ତାପାଇଁ ଆରମ୍ଭ ହେବ ଝଗଡା । ପ୍ରଥମେ ମ୍ୟୁନିସିପାଲଟିଠାରୁ ପରମିଶନ୍ । ଛକଜାଗା ଗୁଡିକ ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ । ସେମାନଙ୍କର ବିନା ପରମିଶନ୍‌ରେ କେମିତି ବା ମୂର୍ତ୍ତିଟି ରଖାଯାନ୍ତା । କିନ୍ତୁ ଏ ତ ସହଜ ବ୍ୟାପାର ନୁହେଁ । ସହିଦ ସୌରୀବଂଧୁର ମୂର୍ତ୍ତିଟି କେଉଁଥିପାଇଁ ରହିବ, ଏଥିପାଇଁ ଫାଇଲ ତାଷ ଜୋରରେ ହେବ । କିଛି ଅର୍ଥ ଶ୍ରାଦ୍ଧକଲେ ଅନୁମତି ମିଳିବ ସତ କିନ୍ତୁ ସେହି ଅଞ୍ଚଳର ଲୋକେ ପୁଣି ହୁଏତ ପିଟିସନ୍ ପକାଇବେ ଯେ ଏପରି ସହିଦ ହେବା ସେମାନେ ଶୁଣି ନାହାନ୍ତି ଏବଂ ଯଦି ସହିଦ ସୌରୀବଂଧୁଙ୍କ ମୂର୍ତ୍ତି ଏଠାରେ ସ୍ଥାପିତ ହୁଏ ।

ତେବେ ସେମାନେ ସେଠାରେ ଅନଶନ ଧାରଣା ଆରମ୍ଭ କରିଦେବେ । ସମିତି ସଭ୍ୟମାନେ ପୁଣି ଆରମ୍ଭ କରିଦେଲେ ବିଚାର ବିମର୍ଷ ଏହି ମୂର୍ତ୍ତିଟିକୁ କିଏ ଅନାବରଣର କରିବ ? ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ବିଧାୟକ କାହାକୁ ଜଣକୁ ତ ଡାକିବାକୁ ହେବ । କେହି ମିଳିବା ସମ୍ଭବ ନହେଲେ ନଗର ପାଳ ସବୁଠୁ ଭଲ । ଏକା ଢେଲାରେ ଦିଇଟା ଶିକାର । ପରମିଶନ ମିଳିଯିବ । ମୂର୍ତ୍ତି ସ୍ଥାପନା ବି ହେବ ।

ସହିଦ ଭାବେ ମୋ ନାଁ ଥାଇ ମୂର୍ତ୍ତି ବସିଯିବ । ପରେ ସେହି ସ୍ଥାନଟି ପକ୍ଷୀମାନଙ୍କର ମଳମୂତ୍ର ତ୍ୟାଗ କରିବାର ସ୍ଥାନଅବଶ୍ୟ ହେବ । ଖାଲି କଣ ପକ୍ଷୀ, ମଣିଷ ଓ କୁଆମାନେ ମଧ ରାତିରେ ସେଇଠି ମଳତ୍ୟାଗ କରିବେ । ସେଇ ଉଦ୍‌ଘାଟନ ଦିନ ଗେଣ୍ଡୁର ଯେଉଁ ମାଳାଟି ବେକରେ ପଡିଥିବ, ତାହା ଶୁଖି ଯାଇଥିବ ଓ ପବନରେ ହଲୁଥିବ, ଝୁଲୁଥିବ, ଦୋହଲୁଥିବ ।

ସବୁଦିନେ କଣ ସହିଦ ହୋଇ ମୁଁ ସେଇଠି ବସିଥିବି କି ? ହଠାତ୍ ଦେଖାଯିବ ସହିଦ ମୂର୍ତ୍ତି ମାନଙ୍କର ମୁଣ୍ଡମାନ ହଜି ଯାଇଛି ଓ ମୋ ମୁଣ୍ଡ ଗଣ୍ଡିରୁ ଅଲଗା ହୋଇ କେଉଁଠି ହଜିଯିବ କେଜାଣି । ସହିଦ ସୌରୀବଂଧୁ କବନ୍ଧ ପାଲଟି ଯାଇଥିବ ।

ସତରେ ଏହା ସବୁ ହେବ, ଯଦି ମୁଁ ସହିଦ ହେବି ।

ମୁଁ ଯଦି ସତକୁ ସତ ସହିଦ ହୋଇଯାନ୍ତି ତେବେ ଯେଉଁ ସାହିତ୍ୟିକବଂଧୁଗଣ ପୁରସ୍କାର ଦେବା କମିଟିରେ ଅଛନ୍ତି, ମୋ ନାଁକୁ ସୁପାରିଶ କରନ୍ତେ । ମୋତେ ମରଣୋତ୍ତର ପୁରସ୍କାର

ନିଶ୍ଚୟ ପ୍ରାପ୍ୟ ହୁଅନ୍ତା । କାରଣ ସମୀକ୍ଷକଙ୍କ ଦୃଷ୍ଟିରେ ମୋ ଭାଉ ବେଶ୍ ବଢି ଯାଇଥାନ୍ତା କାରଣ ତାଙ୍କ ଭିତରୁ ତ ମୁଁ ହେଉଛି ପ୍ରଥମ ଯେ ଦେଶ ପାଇଁ ଜୀବନ ଦେଇଛି । ସେମାନେ ନିଶ୍ଚେ ଗର୍ବିତ ହୋଇଥାନ୍ତେ ।

ମୋର କିନ୍ତୁ ଦୁଃଖ ଯେ ଦେଶ ହାତରୁ ଏପରି ଏକ ସୁଅବସର ଚାଲିଗଲା । ଜଣେ ସ୍ତମ୍ଭକାର ସାହିତ୍ୟିକକୁ ସହିଦ ହେବାର ସୌଭାଗ୍ୟ ମିଳିଥିଲେ ଦେଶ ଗର୍ବ କରିଥାନ୍ତା । ସରକାରର ଲାଭ ହେଲା ଯେ ମୋ ପରିବାରକୁ ଦେବାକୁ ଥିବା ଦଶଲକ୍ଷ ଟଙ୍କା ମଧ ରହିଗଲା । ବର୍ତ୍ତମାନର ସରକାର ଯେଉଁଠି ଯୁଦ୍ଧ ସେଇଠି । ଯୁଦ୍ଧ ଯେଉଁଠି ସହିଦ ସେଇଠି । ହୁଏତ ମୋ ନାଁ ମଧ ଥାଇପାରେ । ଇତିହାସ ପୃଷ୍ଠାରେ ମୋ ନାଁ ରହିଗଲା ବୋଲି ମୋର ଧାରଣା ଭୁଲ । କାରଣ ମୁଁ ତ ସେଠି ନଥିଲି । ମୁଁ ଥିଲେ ଇତିହାସ କଣ ଏତେବଡ ଭୁଲ କରିଥାନ୍ତା । କିଏ ଜାଣେ । ତାହା କେବଳ ଇତିହାସକୁ ଜଣା ।

ମୁଁ କିନ୍ତୁ ସହିଦ ହେବାକୁ ଚାହେଁ । ଇତିହାସ ତାର ପୃଷ୍ଠାକୁ ପୁଣି ପଛକୁ ଲେଉଟାଉ । ମୋତେ ସହିଦ ହେବାର ସୌଭାଗ୍ୟ ମିଳୁ ।



# କ୍ରେମଲିନ୍ ଘଣ୍ଟା ବାଜେ

ଝିପିଝିପି ବର୍ଷା ସତ୍ତ୍ୱେ ବହୁଲୋକ ସେଠାକୁ ଧାଡି ବାନ୍ଧି ଚାଲିଥିଲେ । ପାଗ ଥିଲା ଅସମ୍ଭବ ଭାବେ ଥଣ୍ଡା । ହାତଗୋଡ ଅବଶ ଲାଗୁଥିଲା । ବର୍ଷା ଓ ଶୀତରୁ ରକ୍ଷା ପାଇବା ପାଇଁ ଓଭରକୋଟ ଓ ଛତା ଥିଲା ଅନ୍ଧର ବାଡିପରି । ଦୀର୍ଘମାସ ଧରି ଗରମରେ ସଢୁଥିବା ସତୀଶ୍‌ଙ୍କ ପାଇଁ ପ୍ରବଳ ଶୀତର ପ୍ରତିକୂଳ ପାଗ ତାଙ୍କର ମନୋବଳରେକିଛି ପରିମାଣରେ ଧକ୍କା ଦେଲା ।

ସତୀଶ୍ ଭାରତୀୟ ଟ୍ରେଡ୍‌ୟୁନିଅନ୍ କର୍ମୀଭାବେ ପ୍ରଥମ କରି ଯେତେବେଳେ ପିତୃରାଜ୍ୟରେ ପଦାର୍ପଣ କଲେ, ସେତେବେଳେ ପିତୃରାଜ୍ୟର ଅଧିକାର କ୍ଷୁଣ୍ଣ ହୋଇଯାଇଥିଲା । ସବୁ ପୁଅମାନେ ବାପଠାରୁ ଅଲଗା ହୋଇ ବିରାଟ କ୍ଷେତ୍ରଫଳ ସେହି ଘରଟିରେ ପାଚେରୀମାନ ଉଠାଇ ଦେଇ ନିଜ ନିଜର ଅଂଶକୁ ଭୋଗ ଦଖଲକୁ ନେଇ ଯାଇଥିଲେ । କେବଳ ନିଜ ଅଂଶତକ ଭୋଗ କରିବାରେ ବ୍ୟସ୍ତ ଥିଲେ ବୋଲି କହିଲେ ବାହୁଲ୍ୟ ହେବ, ସେମାନେ ଆପଣାର ପାରିବା ପଣିଆକୁ ଦେଖାଇବା ପାଇଁ ନୂଆ ନୂଆ ବନ୍ଧୁମାନଙ୍କୁ ସଙ୍ଗୋଳି ଆଣୁଥିଲେ ଓ ନୂଆ କଥା ଶିଖିବାରେ ଲାଗିଥିଲେ ।

ଭାରତପରି ଏକ ବିରାଟ ଦେଶରେ ଅନେକ ବୈଚିତ୍ର୍ୟ ଥିବାରୁ ସତୀଶ୍ ଥିଲେ ବହୁ ସ୍ୱାଧୀନତାର ଅଧିକାରୀ । ସେ ନିଜର ଟ୍ରେଡ୍‌ୟୁନିୟନକୁ ନିଜ ଜମିଦାରୀରେ ଅନ୍ୟମାନଙ୍କ ପରି ପରିଣତ କରିଦେଇଥିଲେ ହେଁ ଗଣତନ୍ତ୍ର ଶାସନ ବ୍ୟବସ୍ଥା ଖୋଳପା ଭିତରେ ରହି ବାରମ୍ବାର ସ୍ୱାଧୀନତା କଥା କହୁଥିଲେ । ପିତୃରାଜ୍ୟର ଏକଚାଟିଆ ଶାସନରେ ସବୁ ପୁଅମାନଙ୍କର ଦଖଲ ସାବ୍ୟସ୍ତ ହୋଇ ଯାଇଥିବା ହେତୁ, ସେ ସେଠାରେ ନିଜକୁ ଭାରତରେ ଥିବାପରି ଅନୁଭବ କରୁଥିଲେ

ଯଦିଓ ଗଣତନ୍ତ୍ର ରୂପକ ଲୋକଶାସନ ବ୍ୟବସ୍ଥାର ଅଭାସ କାଁ ଭାଁ ଦେଖାଯାଉ ନଥିଲା ।

କଲିକତା ସହର ଛାଡିବାବେଳେ ବହୁ ବନ୍ଧୁ କେତେ କେତେ ଉପଦେଶ ଛାତ୍ରମାନଙ୍କୁ ଶ୍ରେଣୀଗୃହରେ ଅଧ୍ୟାପକ ଦେବାପରି ଦେଇଥିଲେ । ଉପଦେଶ ଭାରତରେ ଅତି ଶସ୍ତାରେ ମିଳୁଥିବା ପଦାର୍ଥ । ଶସ୍ତା କହିଲେ ଭୁଲ୍ ହେବ ବରଂ ମାଗଣା କୁହାଯାଇପାରେ । ପିତୃରାଜ୍ୟର ଶାସନପଦ୍ଧତି ସଂପର୍କରେ ଟ୍ରେଡ୍‌ୟୁନିୟନ କ୍ଲାସ୍‌ରେ ପଢିବାବେଳେ ସର୍ବହରାର ଏକନାୟକତ୍ୱ ଦର୍ଶନପ୍ରତି ସେ ଆକୃଷ୍ଟ ହୋଇଥିଲେ । ଆକୃଷ୍ଟ ହେବା ତାଙ୍କ ପାଇଁ ଥିଲା ସ୍ୱାଭାବିକ୍ ।

ସେ ଥିଲେ ଜନ୍ମରୁ ସର୍ବହରା । ସବୁ ହରାଇ ରାସ୍ତାର ଧୂଳୀରେ ନିଜକୁ ଆବିଷ୍କାର କରିବା ପରି, ସତୀଶ୍ ଜନ୍ମହେବା ମାତ୍ରେ ପିତୃନାମଧାରୀ ବ୍ୟକ୍ତିଟିର ମୁହଁ ଦେଖି ନଥିଲେ । ରାସ୍ତାରେ ଚାଲିଗଲା ବେଳେ କେହି ତାଙ୍କର ହାତଧରି ଚଳାଇ ନେଉ ନଥିଲା । ସେ କେତେଥର ପାଣି ଖସଡାରେ ପଡିଯାଇ ନିଜର ଏକମାତ୍ର ପୋଷାକଟିକୁ କାଦୁଅ ଲୁତୁବୁତୁ କରି ଫେରି ଥିବାରୁ ତାଙ୍କ ମା ତାଙ୍କ ଉପରେ ବିରକ୍ତ ହେବା ସହିତ ଉତ୍ତମ ମଧ୍ୟମର ବ୍ୟବସ୍ଥା ମଧ କରୁଥିଲେ । ରାଗ ତମ ତମ ହୋଇ କହିବେ, "କେତେ ଦିନ ଗଲେ ରାସ୍ତାରେ ଚାଲି ଶିଖିବୁ ? ତୁ କଣ ଜାଣି ନାହୁଁ, ତୋତେ ଏକୁଟିଆ ସଂସାରର ଏଇ ପିଚ୍ଛିଳରାସ୍ତାରେ ଚାଲିବାକୁ ବେ ।"

ସେ ଏକା ଏକା ଅବଶ୍ୟ ଚାଲିଥିଲେ ମାତ୍ର ଅନ୍ୟମାନଙ୍କୁ ସାଙ୍ଗରେ ନେଇ ଚାଲିବାକୁ ଶିଖିଥିଲେ । ଏକାଠି ହୋଇ ନଚାଲିଲେ ଶ୍ୱାପଦ ଶଙ୍କୁଳ ବ୍ୟବସ୍ଥାକୁ ଠିକ୍ କରି ପାରିବେ ବୋଲି ତାଙ୍କର ଆତ୍ମପ୍ରତ୍ୟୟ ନଥିଲା ।

ପିତୃରାଜ୍ୟକୁ ସେ ସେହି ସମୟରେ ଆସି ପାରି ନଥିଲେ । ନିଜକୁ ଗଢି ଠିଆହେବାର ଶକ୍ତି ସଞ୍ଚୟ କରିବା ବେଳକୁ ପିତୃରାଜ୍ୟରେ ପିଲାମାନେ ନିଜ ନିଜର ଅଂଶକୁ ଅଲଗା କରିନେଇ ଆପଣା ଆପଣା ମୁରବୀତ୍ୱକୁ ଜାହିର କରିବା ସହିତ ଘୋଷଣା କରି ଦେଇଥିଲେ, ଆମ୍ଭମାନଙ୍କ ରାଜ୍ୟରେ ଆଉ କେହି ସର୍ବହରା ରହିବେ ନାହିଁ । ସର୍ବହରାର ଏକନାୟକତ୍ୱ ଦିନ ସରିଯାଇଛି । ସତୀଶ୍ ଏକଥା ଶୁଣିଲେ ମଧ ନିଜ କାନକୁ ବିଶ୍ୱାସ କରି ପାରି ନଥିଲେ । ବହୁ ଦିନରୁ ଦେଖିବାର ଆଶା ହଠାତ୍ ଫଳବତୀ ହେବ ବୋଲି ମଧ ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ।

ପାଗ ଏମିତି ଖରାପ ହୋଇଯିବ ବୋଲି ସେ ଜାଣିସୁଦ୍ଧା ତାଙ୍କ ପାଖରେ ଓଭରକୋଟ୍ ନଥିଲା । ସେ ନିଜର ଏକମାତ୍ର କୋଟ୍‌ଟିକୁ ଦେହରେ ଜଡାଇ ଦେଇ ଲମ୍ବା କ୍ୟୁରେ ଧୀରେ ଧୀରେ ଚାଲିବାକୁ ଲାଗିଥିଲେ । ଦୁଇ ଦୁଇ ଥର ସେଠାକୁ ଆସି ଫେରିଯିବା ପରେ ତୃତୀୟଥର ସେ ନିଜର ଇଷ୍ଟକୁ ଦେଖିବାର ସଂକଳ୍ପ ସିଦ୍ଧି ହେବାକୁ ଯାଉଥିବାରୁ ତାଙ୍କୁ ଥଣ୍ଡା ଆଦୌ ଜଣାପଡିଲା ନାହିଁ । ବର୍ଷା ଆସ୍ତେ ଆସ୍ତେ ବନ୍ଦ ହେବାକୁ ଲାଗିଥିଲା ।

କ୍ୟୁ ଲମ୍ବା । କେତେ କେତେ ଡେଙ୍ଗା ଗୋରା ମଣିଷମାନେ ସେହି କ୍ୟୁରେ ଠିଆ ହୋଇ ଧୀରେ ଧୀରେ ଚାଲୁଥିଲେ । ସ୍କୁଲ କଲେଜର ସାନ ସାନ ପୁଅଝିଅ ମଧ ଧାଡିରେ ନିଜର ଛୋଟିଆ ପାଦରେ ସେଇ ଭୂମିକୁ ଅତିକ୍ରମ କରିବାକୁ ଥିଲେ ଚେଷ୍ଟିତ । ସମଗ୍ର ବାତାବରଣ ଆର୍ଦ୍ର ଥିବା

ସତ୍ତ୍ୱେ ଥିଲା ସେଠାରେ ପ୍ରଚଣ୍ଡ ନୀରବତା । ଅବଶ୍ୟ ଏଇ ନୀରବତାକୁ ଅଧିକ ଗମ୍ଭୀର କରି ଦେଉଥିଲା ନିଜର ଉତ୍କୃଷ୍ଟ ପୋଷାକରେ ସାବଧାନ ଭୂମିକାରେ ନିବୃଜ୍ଜଭାବେ ପାଦରଖି ଷ୍ଟାଚ୍ୟୁଟିଏ ପରି ଠିଆ ହୋଇଥିବା ପୁଲିସଗାର୍ଡ । ସେହି ପୁଲିସ ଗାର୍ଡଙ୍କୁ ଦେଖି ସତୀଶ୍ ଭାରତର ପୁଲିସମାନଙ୍କର ଚେହେରାକୁ ମିଳାଉଥିଲେ ଓ ଦିଲ୍ଲୀର ଗାନ୍ଧୀ ସମାଧିସ୍ଥଳରେ ଧାଡିବାନ୍ଧି ଯିବାବେଳେ ଦର୍ଶକମାନଙ୍କର ବିହ୍ୱଳିତ ଭାବ, କୋଳାହଳ ଓ ଫଟୋ ଉଠାଇବାରେ ପରି ସମାପ୍ତି ହେବାର ସାମାନ୍ୟତମ ଚିହ୍ନମଧ ଏଠାରେ ସେ ଦେଖିବାକୁ ପାଉ ନଥିଲେ ।

ପିତୃରାଜ୍ୟର ନାଗରିକମାନେ ସ୍ୱାଭାବିକଭାବେ ଥିଲେ ଅନୁଶାସନ ପ୍ରିୟ ଓ ଶୃଙ୍ଖଳିତ । ସେହି କାରଣରୁ ହେଉ ବା ପୁଲିସର ଚକ୍ଷୁରୁ ଏଡାଇଯିବା ସମ୍ଭବ ହେଉ ନଥିବା ଯୋଗୁ ହେଉ, କ୍ୟୁରେ ଥିବା ପିଲାମାନଙ୍କଠାରୁ ପୁରୁଷ ଓ ସ୍ତ୍ରୀମାନେ ଧୀରେ ଧୀରେ ପାଦ ଥାପି ଥାପି ଚାଲୁଥିଲେ । ବୁଟ୍ ଯୋତାର ଭାରି ଆବାଜ ମଧ କାନରେ ପଶୁ ନଥିଲା ।

ସତୀଶ୍ ଛାତ୍ର ଥିବାବେଳେ ଏକ ଫଟୋଚିତ୍ର ସମ୍ବଳିତ ପତ୍ରିକା କେଉଁସୂତ୍ରରୁ କେଜାଣି ପାଇଥିଲେ । ସେ ସେହି ଫଟୋଗୁଡିକୁ ବହୁଥର ମନଯୋଗ ସହକାରେ ଦେଖିବାକୁ ଭୁଲି ନଥିଲେ । ଏ ବୟସରେ ମଧ ଦିନେ ଦିନେ ସେହିଗୁଡିକୁ କାଢି ନିରିଖେଇ ଚାହିଁବାରେ ସେ ଆତ୍ମତୃପ୍ତି ଲାଭ କରନ୍ତି । କେତେ ବଡ ମଣିଷର ଚିତ୍ରଗୁଡିଏ ।ପିଲାଦିନରୁ ବଡ ହୋଇ ଶେଷ ଶଯ୍ୟାରେ ଶୋଇ ରହିବାର ଚିତ୍ର । ବାହାର ବାରଣ୍ଡାରେ ବସିପଡି ଲେଖୁଥିବା ବେଳର ଏକ ସୁନ୍ଦର ଚିତ୍ରକୁ ଦେଖି ସତୀଶ୍ ଏମିତି ଅଭିଭୂତ ହୋଇଗଲେ ଯେ ନିଜେ ବରଣ୍ଡାରେ ଚୌକିଟିଏ ପକାଇ ସେଇଦିନରୁ ଲେଖିବାକୁ ଆରମ୍ଭ କରିଦେଲେ । ତାଙ୍କର ଥାକ ଥାକ ଲେଖା ଭିତରୁ ସେ ପାଇଥିଲେ ଅନେକ ପ୍ରେରଣା । ନିଜେ କିଛି ଲେଖିବାବେଳେ ତାଙ୍କୁ ଲାଗୁଥିଲା ସର୍ବହରାକୁ କିଛି ପାଇବାକୁ ହେଲେ ନିଜ ମନର ଭାଷାକୁ ପ୍ରକାଶ କରିବାକୁ ହେବ । ତା ନହେଲେ ଲୋକେ କେମିତି ସେମାନଙ୍କ କଥା ଜାଣିବେ ? ପତଳା ହୋଇ ସେହି ଦୃଢଚେତା ଓ ଦୃଢମନା ମଣିଷଟି ପ୍ରତି ବହୁଭାବେ କେବଳ ଆକୃଷ୍ଟ ହୋଇଥିଲେ ନୁହେଁ ବରଂ ତାଙ୍କୁ ତାଙ୍କର ଅନ୍ୟତମ ଇଷ୍ଟଭାବେ ସତୀଶ୍ ଗ୍ରହଣ କରିଥିଲେ ।

ଆଜି ତାଙ୍କୁ ଦେଖିବେ । ନିଜର ଡିମା ଡିମା ଆଖି ଦୁଇଟିରେ ମନ ପୂରାଇ ଦେଖିବାକୁ ଇଚ୍ଛା କରି ସେ ଏତେ ଦୂରରୁ ଏଠାକୁ ଆସିଛନ୍ତି । ସେଇ ଆକର୍ଷଣ ହିଁ ତାଙ୍କୁ ଟାଣି ଆଣିବାରେ ସାହାଯ୍ୟ କରିଛି । ଏଠିକି ଆସିବା ପାଇଁ ତାଙ୍କୁ ବହୁକଷ୍ଟ ସହିବାକୁ ପଡିଛି । କାହାକୁ ସେ ଏକଥା କହିବେ ? ସେ କଥା କହି ଲାଭ ବା କଣ ? ସେ ଯେ ଆସି ପାରିଛନ୍ତି, ଏଇ ତାଙ୍କ ପାଇଁ ଯଥେଷ୍ଟ ନୁହେଁ କି ?

ବୋଉ ତାଙ୍କୁ ପିଲାଦିନେ ଭାଗବତ ଶୁଣାଏ । ଦିନେ ପଦଟିଏ ବୋଲିଲା, ଏ ମନ ଭାବୁଥାଇ ଯାହା । କାଳେ ପ୍ରାପତ ହୁଏ ତାହା । ଏହାକୁ ବୁଝାଇ ବୋଉ କହିଲା, ଦେଖ୍ । ମନ ହେଉଛି ସବୁ କିଛି । ତୁ ମନରେ ଯାହା ଭାବୁ, ତାହା ନିଷ୍ଠାର ସହ ଚିନ୍ତାକଲେ ସମୟକ୍ରମେ ତାହା ମିଳେ । ବୋଉ କଥାକୁ କେତେ ବେଶି ସତୀଶ୍ ମନେ ରଖିଥିଲେ କୁହାଯାଇ ନପାରେ ! କିନ୍ତୁ

ବାରମ୍ବାର ମନରେ ଭାବୁଥିଲେ ଯେଉଁଦିନଠୁ ସେଇ ଚିତ୍ର ପତ୍ରିକାଟିରେ ତାଙ୍କର ଭାଷଣ ଦେଉଥିବାର ଫଟୋଟିକୁ ଦେଖିଲେ ଅଧା ଫ୍ରେଞ୍ଚକଟ୍ ଦାଢ଼ୀ, ମୁଣ୍ଡରେ ସ୍ୱଳ୍ପ ବାଳ, ଉପର ପାଖ ଚନ୍ଦା, ତୀକ୍ଷ୍ଣ ନାକ ଓ ପ୍ରଶସ୍ତ ହାତକୁ ବଢ଼ାଇଦେଇ ଲୋକମାନଙ୍କୁ ସଂଗ୍ରାମ ଭୂମିରେ ବୀରପରି ଲଢ଼ିବାର ଆହ୍ୱାନରେ ସେ ଆମୋଦିତ ହେଲେ ଓ ମନରେ ତାଙ୍କୁ ବୀରର ଆସନରେ ବସାଇ ପୂଜା କରିବାକୁ ଲାଗିଲେ । ଧୂପ, ଦୀପ ଓ ଚନ୍ଦନକୁ ହେୟ ମଣୁଥିବା ସେହି ବୀରଙ୍କର କପାଳରେ ସ୍ୱେଦବିନ୍ଦୁ, ଦେହରେ ଧୂଳିଧୂସରିତ ଶ୍ରମିକର ପୋଷାକରେ ସେ ବେଶି ବେଶି ଉଜ୍ଜ୍ୱଳ ଦେଖାଯାଉଥିଲେ ଏବଂ ମାନବ ସମାଜର ଅଗ୍ରପୂଜ୍ୟ ହେବାର ଗୌରବ ପାଇବାକୁ ହୋଇଥିଲେ ହକ୍‌ଦାର ।

ଦିନେ ସେ ହିଁ ସମଗ୍ର ବିଶ୍ୱକୁ ଚକିତ କରି, ଦେଶର ଶାସନଭାରକୁ ହଠାତ୍ ନିଜ ହାତକୁ ଟେକି ନେଇଥିଲେ ଓ ସମଗ୍ର ବିଶ୍ୱମାନବର ମୁକ୍ତି ପାଇଁ ଆହ୍ୱାନ କରି, ପ୍ରତ୍ୟେକ ମଣିଷ ଦେହରେ ସୃଷ୍ଟି କରିଥିଲେ କମ୍ପନ ।

ଏ ଥିଲା ଇତିହାସ । ଘଟଣା ଘଟିସାରିବା ପରେ ଲେଖା ହୋଇଥିଲା ଇତିହାସ । ସତୀଶ୍ ଇତିହାସର ଛାତ୍ର ନଥିଲେ କିନ୍ତୁ ଇତିହାସକୁ ଅଧ୍ୟୟନ କରିଥିଲେ । ମଣିଷର ଦୁଃଖଶୋକ, ହସକାନ୍ଦ ଓ ଜନ୍ମମୃତ୍ୟୁର ଇତିହାସ ଖୋଜିବାବେଳେ ସର୍ବହରା ମଣିଷମାନଙ୍କ ପାଇଁ ଅନବରତ ନିଜ ଆଖିରୁ ଲୁହ ଝରାଉଥିବା ଏଇ ମଣିଷଟିକୁ ଆବିଷ୍କାର କରିଥିଲେ ।

ବହୁଦିନ ପରେ ଦେଖିବାର ଦୁର୍ବାର ଇଚ୍ଛାକୁ ଚାପି ରଖି ନପାରିଆସିବାକୁ ଚେଷ୍ଟା କରିଥିଲେ ଓ ହଠାତ୍ ନିଜକୁ ତାଙ୍କର ପ୍ରିୟ ନେତା ଓ ଇଷ୍ଟଙ୍କ ସହରରେ ପହଞ୍ଚି ଧାଡ଼ିରେ ତାଙ୍କୁ ଦେଖିବାକୁ ଅପେକ୍ଷା କରି ରହିଛନ୍ତି ।

ସତୀଶ୍ ଧୀରେ ଧୀରେ ଚାଲୁଥିବା ଧାଡ଼ିରେ ରହି ନିଜ ସଂପର୍କରେ, ନିଜର ଇଚ୍ଛାମାନଙ୍କ ସଂବନ୍ଧରେ ଓ ସର୍ବୋପରି ସଫଳତା ହାତମୁଠାକୁ ଚାଲି ଆସୁଥିବାର ଦେଖି ନିଜର କର୍ମ ଓ ଭାଗ୍ୟକୁ ପ୍ରଶଂସା କରୁଥିଲେ ।

କୋହଲା ପାଗ । ବର୍ଷା ବନ୍ଦ ହୋଇ ଯାଇଥିଲା । ବୁଟ୍ ଯୋତା ଥିବା ସତ୍ତ୍ୱେ ପାଦ ଥଣ୍ଡା ଲାଗୁଥିଲା । ଉଲନ୍ ମୋଜା ଭିତରକୁ ଥଣ୍ଡା ପଶିଯାଇ ଯୋତାଭିତରେ ସନ୍ତର୍ପଣରେ ଶୋଇ ରହିଥିବା ଆଙ୍ଗୁଠି ଗୁଡ଼ିକୁ ଆକ୍‌ଚା ମାକ୍‌ଚା କରି ଦେଉଥିଲା ।

ପ୍ରତ୍ୟେକ ଦଶଫୁଟ ଦୂରତାରେ ପୁଲିସ୍ ଗାର୍ଡ ଧାଡ଼ିରେ ଚାଲୁଥିବା ଦର୍ଶକମାନଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଗନ୍ତବ୍ୟ ରାସ୍ତାର ଦିଗ ନିର୍ଦ୍ଦେଶ କରୁଥିଲେ । ବାହାରକୁ ଆଦୌ ଜଣା ନ ପଡୁଥିବା ଗୃହ ମଧ୍ୟକୁ ସତୀଶ ଧୀରେ ଧୀରେ ପ୍ରବେଶ କରିବାକୁ ଲାଗିଥିଲେ । ଛାତି ତାଙ୍କର ଧଡ ଧଡ ହେଉଥିଲା । କେତେ ବର୍ଷ ପରେ ମନର ଆଶା ପୂରଣ ହେବାକୁ ଯାଉଛି ଭାବି ଅତି ଆନନ୍ଦରେ ସେ ମନ ଭିତରେ କୁହୁଳି ଉଠୁଥିଲେ । ତାଙ୍କର ସମସ୍ତ ପରିଶ୍ରମ ଆଜି ସଫଳ ହେବାକୁ ଯାଉଛି ।

ଦୂରରେ ଶୋଇଥିବା ପୁରୁଷ ସିଂହକୁ ଚାହିଁଲେ । ଦୂରରୁ ଧୀରେ ଧୀରେ ଘୂରି ଘୂରି ଯିବାବେଳେ ଯୋଡହସ୍ତରେ ନମସ୍କାର କଲେ । ହାତମୁଠାକୁ ଉଠାଇ ଲାଲ୍‌ସଲାମ୍ କଲେ ।

ଲୀନହୋଇ ସାଷ୍ଟାଙ୍ଗ ପ୍ରଣିପାତ କରିବାକୁ ଇଚ୍ଛା ହେଉଥିଲା । ସେତକ କରିବାର ସୁଯୋଗ ସେଠାରେ ନଥିଲା । ତାଙ୍କ ଆଗରେ ଅତି ଧୀର ପଦକ୍ଷେପରେ ଚାଲୁଥିବା ବୃଦ୍ଧାଙ୍କୁ ସତୀଶ୍ ଚାହୁଁଥିଲେ । ଲୋଚା କୋଚା ହୋଇ ଚମ ଧୁଡୁ ଧୁଡୁ ହୋଇଥିଲେ ହେଁ ବେଶପୋଷାକ ପରିହିତ ହୋଇ ସେ ନିଜର ଚରମ ବାର୍ଦ୍ଧକ୍ୟକୁ ଡାଙ୍କିବାକୁ ପ୍ରଯତ୍ନ କରିଥିଲେ । ଆଖିରେ ଦୀପ୍ତି ନଥିଲା । ନୟନ ଅଶ୍ରୁସିକ୍ତ ନ ହୋଇ ହୋଇଥିଲା କୋଟରାଗତ । ସତୀଶ୍ ନିର୍ନିମେଷ ନୟନରେ ଅପରୂପ ବୀରତ୍ୱର ସୌନ୍ଦର୍ଯ୍ୟରେ ଚିର ନିଦ୍ରାରେ ଶୟନରତ ନିଜର ମହାନ୍ ନେତା ଓ ଇଷ୍ଟଙ୍କୁ ବାରମ୍ବାର ଆଖିଫେରେଇ ଓ ଆଖିପୂରାଇ ଚାହୁଁଥିବା ବେଳେ ନିଜ ସମ୍ମୁଖରେ ସେହି ବୃଦ୍ଧ ମହିଳାଙ୍କର ନିଦାରୁଣ କଷ୍ଟ ସତ୍ୱେ ଶ୍ରଦ୍ଧା ନିବେଦନ କରିବାକୁ ଆସିଥିବାରୁ, ତାଙ୍କ ପ୍ରତି ମାତୃଭକ୍ତିରେ ମୁଣ୍ଡ ନଇଁ ପଡୁଥିଲା । ସେ ଥିଲେ ତାଙ୍କ ବୋଉ ବୟସର । ବୋଉ ଏବେ ବଞ୍ଚିଥିଲେ ବୋଧହୁଏ ସେହି ବୃଦ୍ଧାଙ୍କ ପରି ହୋଇଥାନ୍ତେ ! ତାଙ୍କ ସଂପର୍କରେ ଭାବିବାକୁ ବା ତାଙ୍କର ସମୟ କାହିଁ ? ସେ ଜଗନ୍ନାଥଙ୍କୁ ଦେଖି ତ ଭୋଳ । ଅନ୍ୟମାନେ ଅଛନ୍ତି କି ନାହାନ୍ତି, ସେଥିଲାଗି ନଜର ନାହିଁ । ତଥାପି ବୃଦ୍ଧା ମହିଳା ତାଙ୍କ ଦୃଷ୍ଟିକୁ ଏଡାଇ ପାରିଲେ ନାହିଁ । ବହୁ ଆଶା, ବହୁ ସ୍ୱପ୍ନ ଓ ବହୁ ପ୍ରତୀକ୍ଷାର ପୂର୍ଣ୍ଣଚ୍ଛେଦ ପଡିଲା । ଆଉ ସେ ସୌଭାଗ୍ୟ ହେବ, ସେ ପୁଣି ଥରେ ଏଠାକୁ ଆସିବେ, ଏକଥା ମନରେ ଆଦୌ ପରତେ ହେଉ ନଥିଲା ।

ଅଲବିଦା କହି ଯୋଡହସ୍ତ ମୁଣ୍ଡରେ ଲଗାଇଲେ । ଧୀର ପଦକ୍ଷେପରେ ସେହି ମୁସୋଲିୟମ୍ ମଧ୍ୟରୁ ନିଷ୍କ୍ରାନ୍ତ ହୋଇ, ଦେଶ ପାଇଁ ବଳି ଦେଇଥିବା ଯୋଦ୍ଧା ଓ ବୀର ଶହୀଦ୍ମାନଙ୍କୁ ପ୍ରଣତି ବାଢିବାକୁ ଆଗକୁ ଚାଲିବାବେଳେ, ପୁଣି ଥରେ ତାଙ୍କ ଦୃଷ୍ଟିରେ ପଡିଲା ସେହି ବୃଦ୍ଧା । ହାତରେ ଫୁଲଗୁଚ୍ଛ ।

ଅନେକ ଅଜଣା ସୈନିକ ନୀରବରେ ଶୋଇଥିବା ସ୍ଥାନରେ ସେ ଆଣ୍ଠୁମାଡି ଗୋଲାପର ଫୁଲଗଛଟିକୁ ଥୋଇ ଦେଲେ ଓ ମୁଣ୍ଡପୋତି ଆଖିରୁ ଅନବରତ ଅଶ୍ରୁ ବୁହାଇବାକୁ ଲାଗିଲେ ।

ସତୀଶ୍ ପୁତ୍ରବିଧୂରା, ସ୍ୱାମୀହରା ମାକୁ ଦେଖୁଥିଲେ । ସର୍ବହରା ଏକନାୟକତ୍ୱର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ, ନିଜକୁ ହସି ହସି ହଜାଇ ଦେଇଥିବା ବୀର ଜନନୀ ଆଖିରେ ଲୁହ ।

ଏହା କଣ ଭାଗ୍ୟର ବିଡମ୍ବନା ନା ବିଧିର ନିଷ୍ଠୁର ପରିହାସ ! ଯେଉଁ ଜନନୀ ଦେଶ ପାଇଁ ନିଜର ପୁତ୍ରକୁ ତ୍ୟାଗ କରିବାରେ, ପତିକୁ ମୁଚ୍ଛିପାରେ, ଆଜି ସେ ଜନନୀ କାନ୍ଦେ । ଏତେ ବର୍ଷ ପରେ କଣ ପିତା ଓ ପୁତ୍ର ପାଇଁ ? ପିତୃରାଜ୍ୟକୁ ଭାଗ ଭାଗ କରି ନିଜ ନିଜ ଅଂଶଧନ ଉପରେ ଭୋଗଦଖଲ ପାଇଁ ପରସ୍ପରକୁ ନିନ୍ଦା କରୁଥିବା ଓ କଳିରେ ମାତିଥିବା ପୁଅମାନଙ୍କ ପାଇଁ ? ସତୀଶ୍ ଚାହିଁଲେ । ଦୂରରୁ ଦେଖାଯାଉଥିଲା ମୁସୋଲିୟମ୍ । କେହି ପୁଲିସ୍ ଗାର୍ଡ ନଥିଲେ । କ୍ରେମଲିନ୍ ପ୍ରାସାଦ ଘଣ୍ଟାରେ ସମୟ ଦୁଇଟା ସୂଚୀତ କରି ଘଣ୍ଟା ଢୋ ଢୋ ପିଟା ଚାଲିଥାଏ ।



# ଅଶୋକ ବାଟିକା ତଳେ ଧର୍ଷିତା ସୀତାଦେବୀ

ସିକନ୍ଦରାବାଦ ଷ୍ଟେସନରେ ଟ୍ରେନ୍ ଧୀରଗତିରେ ପହଞ୍ଚିଲା ।

ଯାତ୍ରୀଗଣ ! କୃପୟା ଧ୍ୟାନଦେ । କୋଣାର୍କ ଏକ୍ସପ୍ରେସ ଅପନି ନିର୍ଦ୍ଧାରିତ ସମୟସେ ଦୋ ଘଣ୍ଟା ବିଳମ୍ବ ସେ ଚଲ୍ ରହି ହୈ ।

ଏହା ବାରମ୍ବାର ଘୋଷଣା ହୋଇ ବନ୍ଦ ହୋଇ ଯାଇଥିଲା । ବନ୍ଧୁ ସୁବିର ମୋତେ ରିସିଭ୍ କରିବାପାଇଁ ଦଶଟାବେଳୁ ଆସି ଅପେକ୍ଷା କରିଥିଲା ଦୀର୍ଘ ତିନିଘଣ୍ଟା । ତାର ଚିରବିନୋଦନର ସାଥୀ ଥିଲେ ତିନିକପ୍ କଫି । ଚିନି ସହିତ ଭୁଲିଯାଇଥିବା ସମ୍ପର୍କ କଫି ପିଇବା ଦ୍ୱାରା ପୁଣି ଥରେ ଯୋଡିହୋଇ ଯାଇଥିଲା । ବହୁ ସମୟ ଟ୍ରେନ୍ ଏହି ସ୍ଥାନରେ ରହିବାର ନିଶ୍ଚିତ ଥିବାରୁ ମୁଁ ଧୀରେ ଧୀରେ ଓହ୍ଲାଇବାକୁ ଆରମ୍ଭ କରିଥିଲି । ମୋର ଧୀରେ ଓହ୍ଲାଇବା କାରଣ ଥିଲା ସଦ୍ୟ ବନ୍ଧୁତ୍ୱପ୍ରାପ୍ତ ଶିତଳାକୁ ଏକାକୀ ଛାଡି ନଯିବା ।

ଶିତଳା ମଧ୍ୟ ବୟସ୍କା ମହିଳା । ଦୀର୍ଘ କେତେବର୍ଷ ଧରି ଭୁବନେଶ୍ୱରରେ ବର୍ତ୍ତମାନ ସ୍ଥାୟୀ ବାସିନ୍ଦା । ସ୍ୱାମୀ ସହିତ ହସଖୁସିରେ କଟାଇଥିବା ଦିନଗୁଡିକ ସ୍ମୃତିରେ । ସେ ସମସ୍ତଙ୍କର ମନା କରିବା ସତ୍ତ୍ୱେ ବିଡିଏଠାରୁ ମୃତ୍ୟୁକାଳୀନ ଜୀବନବୀମା ରାଶି ବଦଳରେ ଶୈଳଶ୍ରୀ ବିହାରଠାରେ କିଣିଥିଲେ ଏକ ଦ୍ୱିତଳବିଶିଷ୍ଟ ଫ୍ଲାଟ୍ ।

ସ୍ମୃତିକୁ ସଂକଳ୍ପରେ ରୂପ ଦେବାର ମାଧ୍ୟମ । ଶିତଳା ଆର୍ମି ଅଫିସର ଶୋଭନ ଅଗ୍ରୱାଲର

ସଦ୍ୟ ବିବାହିତା ପତ୍ନୀ ରୂପେ ପାଞ୍ଚବର୍ଷ ତଳେ ଯୋଗ ଦେଇଥିଲା ଭୁବନେଶ୍ୱରର ସପ୍ତମ ବ୍ୟାଟାଲିୟନ୍‌ରେ । କ୍ୟାମ୍ପସ୍ ଭିତରେ କ୍ୱାର୍ଟର । ସାମନାରେ ଶିବ ମନ୍ଦିର । ପୂଜାରିଣୀ ଶିତଳାର ପୂଜା ନିବେଦନ ଥିଲା ପ୍ରତ୍ୟେକ ଦିନ ସେହି ମନ୍ଦିରରେ । ନିଜ ସ୍ୱାମୀର ସକଳ ମଙ୍ଗଳକାମନା କରିବା ସହିତ ହସଖୁସିରେ ସମୟ କଟିଯିବାର ସମର୍ପଣଭାବ ।

ସକାଳର ସୂର୍ଯ୍ୟ ସନ୍ଧ୍ୟାବେଳକୁ ଧୀର ପଦକ୍ଷେପରେ ଅସ୍ତଯିବା ପରି ପାଞ୍ଚବର୍ଷର ଜୀବନ ଚଟ୍‌କରି ଏଇମିତି ବିଦାୟ ନେବବୋଲି ତାର ଧାରଣା ନଥିଲା । କାହାକୁ ନଜଣାଇ ଶୋଭନ ହଠାତ୍ ରୋଡ୍ ଏକ୍‌ସିଡେଣ୍ଟରେ ଯେଉଁଦିନ କଟକ ବଡ ଡାକ୍ତରଖାନାରେ ପ୍ରାଣତ୍ୟାଗ କଲା, ଖବର ପାଇ ଦୌଡିଯାଇଥିଲା ଶିତଳା । କେବଳ ମୃତ ଶରୀର ଉପରେ ଜୋ କରି ମୁଣ୍ଡଟାକୁ ପିଟିବା ସିନା ସାରହେଲା, ହେଲେ ଶୋଭନ ଆଉ ଉଠି ନଥିଲା । ତାର ପ୍ରଶସ୍ତ ବାହୁ ତାକୁ ଉଠି ଜାବୋଡି ଧରି ନଥିଲା ।

ଶିତଳା ଆଖି ଅଦୂର ଭବିଷ୍ୟତକୁ ଚାହୁଁଥିଲା । ଲୁହ ଢାଳି ଶୋଭନ ପାଇଁ କାନ୍ଦିବାକୁ ତା ମନ ଚାହୁଁଥିଲେ ବି ଜୀବନ ତାକୁ ଲାଗୁଥିଲା ଯୌବନଠାରୁ ବହୁ ମୂଲ୍ୟବାନ୍ । ଲକ୍ଷ୍ନୌ ଷ୍ଟେସନରେ ପରିବାରଠାରୁ ବିଦାୟ ନେଇ ଶୋଭନ ସହିତ ଯେଉଁଦିନ ନୀଳାଚଳ ଏକ୍ସପ୍ରେସ୍ ଯୋଗେ ଭୁବନେଶ୍ୱରକୁ ଆସିଥିଲା, ସେଦିନ ସେହି ଲୋକାରଣ୍ୟ ଷ୍ଟେସନର ଘୋ ଘୋ ଶବ୍ଦ ମଧ୍ୟରେ ତା ମା ଆଖିରୁ ଝରୁଥିବା ଲୁହକୁ ପୋଛି ଦେଇଥିଲା ସେ । ଜୀବନର ପ୍ରଶସ୍ତ କର୍ମକ୍ଷେତ୍ରରେ ବଂଚିବା ପାଇଁ ଲୋଡିଥିଲା ଆଶିର୍ବାଦ ।

ମା ବାପ ଛେଉଣ୍ଡ ଶୋଭନ । ତା ଜୀବନରେ ଶିତଳାର ପ୍ରବେଶ ବହୁଦିନରୁ ସ୍ନେହଶ୍ରଦ୍ଧାରୁ ବଂଚିତ ଶୋଭନ ପାଇଁ ଥିଲା ପ୍ରଥମ ସକାଳର ସୂର୍ଯ୍ୟକିରଣର ସ୍ୱର୍ଶ ।

ଟ୍ରେନ୍ କମ୍ପାର୍ଟମେଣ୍ଟ ଭିତରେ, ତାକୁ ଖୁସିରେ ଭିଡିଧରି ଦୁଇଦିନ ଧରି ଗପିଥିଲା ଶୋଭନ । ଗପର ଝରଣା ଦୁହିଁଙ୍କ ପଥକୁ ପ୍ରଥମ ଥର ଉନ୍ମୁକ୍ତ କରି ଦେଇଥିଲା । ଭାସମାନ ପ୍ରକୃତି ଏହି ଦମ୍ପତିଙ୍କର ପ୍ରେମକୁ କରୁଥିଲା ଈର୍ଷା । କ୍ୱାର୍ଟର ସଂଲଗ୍ନ ବଗିଚାରେ କୀଟଦ୍ରଂଷ୍ଟ ଗୋଲାପ ଫୁଲ ଗୁଡିକର ଅକାଳ ମୃତ୍ୟୁରେ ଦୁଃଖ କରୁଥିବା ଶିତଳା, ହଠାତ୍ ନିଜେ ବୃନ୍ତଚ୍ୟୁତ ହୋଇଯାଇଥିଲା ।

ନିଜ ପ୍ରିୟ ମାତୃଭୂମିଠାରୁ ଦୂରରେ କର୍ମକ୍ଷେତ୍ର ଥିଲା ଭୁବନେଶ୍ୱର । ଏଇଠି ନୀଡ ରଚନା କରିବାରୁ ତାର ସଂକଳ୍ପରେ ପ୍ରଥମ ପୂର୍ଣ୍ଣଚ୍ଛେଦକୁ ସେ ଗ୍ରହଣ କରି ନଥିଲା । ଜୀବନ ଓ ଜୀବନ ସଂଗ୍ରାମ ଥିଲା ତା ପାଇଁ ବେଶି ଲୋଭନୀୟ ।

ଟ୍ରେନର ଏହି ସହଯାତ୍ରିଣୀକୁ ମୁଁ କିଛି କହିବା ପୂର୍ବରୁ ସେ ମୋତେ ପଚାରିଲେ, ଆପଣ କଣ ବମ୍ବେ ଯିବେ ?

ହଁ-ହଁ, ନାଁ-ନାଁ ! ମୋ ପାଟିରୁ ଏହିପରି ଚାରିଥର ଶବ୍ଦ ବାହାରିବାର ଦେଖି ତାଙ୍କ ଓଠରୁ ଟେନାଏ ହସ ଫିକ୍ କରି ମୋ ଓଠ ଉପରେ ଝରି ପଡିଲା ।

"ଆରେ ! ଆପଣ ଏତେ ନର୍ଭସ୍ କାହିଁକି ? ମୁଁ ପଚାରୁଥିଲି, ଆପଣ କଣ ବମ୍ବେ

ଯିବେ ?"

ଅଚାନକ ରାସ୍ତା ମଝିରେ ଅସରାଏ ବର୍ଷାରେ ତିନ୍ତିଯିବା ପରି, ମୁଁ ତାଙ୍କର ଏହି ସପ୍ରେମ ପ୍ରଶ୍ନରେ ନିଜକୁ ଛଟପଟ କରି ଦେଉଥିଲି । ତାଙ୍କ ପ୍ରଶ୍ନ କରିବାବେଳୁ ଭାବୁଥିଲି, ଯାଙ୍କ ସହିତ ବୟେଯାଏ ଗଲେ କେମିତି ହୁଅନ୍ତା ?

"ନାଁ-ମୁଁ ସିକନ୍ଦରାବାଦରେ ଓହ୍ଲାଇ ହାଇଦ୍ରାବାଦ୍ ଯିବି ।" "ମୁଁ ଯିବି ବମ୍ବେ ।"

ତାଙ୍କର ହାଇଦ୍ରାବାଦ ନ ଯିବାକୁ ସେ ଯେପରି ଭଙ୍ଗୀରେ କହିଲେ ମୋତେ ଜଣାହେଲା ଯେପରି ମୋ ଛାଇତଳେ ରହିବାକୁ ବା ଯିବାକୁ ସେ ପସନ୍ଦ କରୁନାହାନ୍ତି ।

ଅବଶ୍ୟ ଏହା ଥିଲା ମୋ ଭାବନା । ସେ କିନ୍ତୁ ମୋତେ ଶ୍ରଦ୍ଧାରେ ଥଟ୍ଟା କରିବାକୁ ଆରମ୍ଭ କରି ଦେଇଥିଲେ । ତାଙ୍କ ହସ ଓ କଥାରେ ମୁଁ ନିଜକୁ ସହଜ କରିବା ବଦଳରେ ଗମ୍ଭୀର ମୁଦ୍ରାରେ ବସିଥିବାର ଦେଖି ପଚାରିଲେ, ଆପଣ ମୋ କଥାରେ ରାଗିଲେ କି ? ଦିନସାରା ଆମେ ଏଇ ଟ୍ରେନ୍‌ରେ ଯିବା ତ ! ପରସ୍ପରକୁ ଜାଣିବା ପାଇଁ ମୁଁ ଏପରି ପଚାରିଲି ।

ମୁଁ ନିଜକୁ ଲଜ୍ଜିତ ଅନୁଭବ କରୁଥିଲି ଓ ସହଜ ହେବାକୁ ଚେଷ୍ଟାକଲି । କେବେଠାରୁ ହଠାତ୍ ମୋ ମୁଡ୍‌ରେ ଏମିତି ପରିବର୍ତ୍ତନ ଘଟିଲାଣି, ତାହାନିଜେ ବୁଝି ପାରୁ ନଥିଲି କିମ୍ବା ଘରୁ ବାହାରିବା ବେଳେ ଅଯଥାରେ ଏତେବେଡ ପୁଅକୁ କୌଣସି କାରଣ ନଥାଇ ପିଟିଥିବାରୁ ମାନସିକ ଭାରସାମ୍ୟ ହରାଇଥିଲି । ଏହା ମଧ୍ୟ ଭାବିବାକୁ ମୋତେ ସମୟ ନଥିଲା ।

ଦୀର୍ଘ ଚବିଶ ଘଣ୍ଟାର ରାସ୍ତା ମଧ୍ୟରେ ତାଙ୍କର ସୁମଧୁର କଣ୍ଠରେ କଥା କହିବାଗଢଙ୍ଗ ମୋତେ ତାଙ୍କ ପ୍ରତି ଆକର୍ଷିତ କରିଥିଲା ।

ଆମେ ଅନେକ କଥା ବାଟସାରା ଗପି ଗପି ଆସିଥିଲୁ । ଓଡିଶାର ଇତିହାସ, ସାହିତ୍ୟଠାରୁ ରାଜନୀତି ପର୍ଯ୍ୟନ୍ତ କହିବାବେଳେ ସେ ଯେତିକି ପ୍ରଗଳ୍ଭ ଥିଲେ, ସେତିକି ଜ୍ଞାନ ଓ ବୁଦ୍ଧିର ପରିଚୟ ଦେଉଥିଲେ । ଶିତଳା ମୋତେ କହିଲେ, "ମୁଁ ଆପଣଙ୍କର ବହୁ ଲେଖା ପଢିଛି । ଜନଜୀବନକୁ ନେଇ ଆପଣ ଯେପରି ସୁନ୍ଦର ଅବତାରଣା କରୁଛନ୍ତି, ତାହା ଜନ ସଚେତନ ତା ନିଶ୍ଚେ ସୃଷ୍ଟି କରିବ । ଆପଣ ଆମ କଥା ଲେଖୁ ନାହାନ୍ତି କାହିଁକି ?"

ଆପଣଙ୍କ କଥା ଲେଖିବାକୁ ମୋ କଲମର ଶକ୍ତି ଥିଲେ ତ ?

ହୋ, ହୋ ହସିଲେ ସେ । ନାରୀସୁଲଭ ହସ । ଯେଉଁ ହସ ତୁଠ ପଥର ଉପରେ ଲେପି ହୋଇ ଜମାଟ ବାନ୍ଧିଥିବା କାଦୁଅକୁ ଧୋଇ ଦେଇ ଯାଉଥିଲା ।

ମୁଁ ଟିକିଏ ପରିହାସ କରି କହିଲି, "ହଁ, ଲେଖିବି ଯେ ! ଆପଣ ମୋର ଚରିତ୍ର ହେବେନି ?" ପୂରିଲା ପୂରିଲା ଗାଲ ଦେଇ ଆଖିରୁ ଝରି ପଡୁଥିବା ହସ ଯେମିତି ଚଟକିନା ପୋଛି ହୋଇଗଲା । ସେ ଗମ୍ଭୀର ହୋଇ ନିଜ ଜୀବନର ଅକୁହା କାହାଣୀ ମୋ ଆଗରେ ମେଲିଦେଲେ ହାଟରେ ଫେରିବାଲା ନିଜର ପସରା ମେଲିଦେବାପରି ।

ସିକନ୍ଦରାବାଦ ଷ୍ଟେସନରେ ସୁବିର ଡାକରେ ତଳକୁ ଓହ୍ଲାଇବାବେଳେ, ସେ ମୋତେ

ତଳକୁ ଆସି ବିଦାୟ ଜଣାଇଥିଲେ ଏବଂ ଭୁବନେଶ୍ୱର ଫେରିବା ପରେ ତାଙ୍କ ଘରକୁ ଯିବାକୁ ଥିଲା ସଶ୍ରଦ୍ଧ ଅନୁରୋଧ ।

ସୁବିର ଗାଡି ଷ୍ଟାର୍ଟ କରିସାରି ମୋତେ ଈଷତ୍ ଥଟ୍ଟା କରି ପଚାରିଲା, "ଦାର୍ଶନିକ କେବେଠୁ ରାସ୍ତାଘାଟରେ ପ୍ରେମ କରିବାକୁ ଆରମ୍ଭ କଲେଣି ? କଣ ଭାଉଜଙ୍କ ସହିତ ଏବେ ଆଉ ଭଲ ସମ୍ପର୍କ ରହୁନାହିଁକି ?"

ମୁଁ ତାକୁ ସେମିତି କିଛି ନୁହେଁ ବରଂ କିଛି କିଛି ମଣିଷ ଜୀବନର ନିଚ୍ଛକ ସତ୍ୟର କେମିତି ସାମନା ହୁଏ, ତାହା କହିବାକୁ ଯାଇ ଆରମ୍ଭ କରିଥିଲି ଶିତଳାର ଜୀବନ ସଂଗ୍ରାମର କାହାଣୀ । ଆଧୁନିକ ମହିଳାର ଭାରତୀୟ ରୂପ । ମଦ ନିଶାରେ ଟଳଟଳ ହୋଇ ବ୍ରିଗେଡିୟର ଅମର ସିଂ ଶିତଳାଙ୍କ କ୍ୱାର୍ଟର ବେଲ୍ ଦେଲେ । ସଂଧ୍ୟା ୭ଟା । କବାଟ ଖୋଲିଲେ ଶିତଳା । ସାମନାରେ ତାଙ୍କ ସ୍ୱାମୀଙ୍କ ବସ୍ ।

"ନମସ୍କାର । ଆସନ୍ତୁ ଭିତରକୁ ।"

ମଦ ନିଶା ଆର୍ମି ଅଫିସରଙ୍କର ନିତିଦିନିଆ ବ୍ୟାପାର । ବ୍ରିଗେଡିୟର ମଦ ନିଶାରେ ଥିଲେ ବି ସଂଯତ ଭଦ୍ର ବ୍ୟବହାର କରିବାର ଆଶା ରଖିଥିଲେ ଶିତଳା । ଶୋଭନ ମୃତ୍ୟୁର ଅଳ୍ପଦିନ ପରେ ସେ ଆସିଥିଲେ । ବୋଧହୁଏ ତାଙ୍କର ପ୍ରାପ୍ୟ ସମ୍ପର୍କରେ କହିବାକୁ ।

"ଡିୟର ଡାର୍ଲିଂ ଶିତଳା; ଆଇ ଲଭ୍‌ୟୁ । ୟୁ ଆର ମାଇ ହାର୍ଟ । କମ୍ ଡାର୍ଲିଂ । ଲେଟ୍ ଅସ୍ ଏନଜଏ ଦି ବିୟୁଟିଫୁଲ ଇଭିନିଂ । ଆଇ ଉଇଲ୍ ପେ ଅଲ୍ ଇଓର ଡ୍ୟୁଜ୍ ।"

ଚମକି ପଡିଲେ ଶିତଳା । ବ୍ରିଗେଡିୟର ଅମନ ସିଂ ଏ କି କଥା କହୁଛନ୍ତି । ଶୋଭନ ଥିବାବେଳେ କାହିଁ ଏପରି କଥାତ......

ହଠାତ୍ ନିଜ ଚେୟାରରୁ ଉଠିଆସି ଖୁବ୍‌ଜୋରରେ ଭିଡି ଧରିଲେ ଶିତଳାଙ୍କୁ । ନିଜର ଆଦିମ ପ୍ରବୃତ୍ତି ତାଙ୍କର ସେହି ମୂଲ୍ୟବାନ ପୋଷାକ ଦେଇ ପରିଷାର ହୋଇ ଆସୁଥିଲା । ବଳିଷ୍ଠ ମାଂସପେଶୀ ଭିତରେ ପେଶିହୋଇ ଯିବା ପୂର୍ବରୁ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ ଶିତଳା । ପାଲଟି ଯାଇଥିଲେ ଦେବୀ ଦୁର୍ଗା । ବ୍ରିଗେଡିୟରଙ୍କର ମଦ ନିଶା ଅବଶ୍ୟ ତାଙ୍କୁ ସାହାଯ୍ୟ କରିଥିଲା । ସାମୟିକ ପ୍ରତିରୋଧ ସାମୟିକ ଝଡ ପରି ଚାଲିଗଲା ସତ, କିନ୍ତୁ କିଏ ହେବ ତାଙ୍କର ରକ୍ଷାକର୍ତ୍ତା ? ନାରୀ ଦୁର୍ବଳ ନହେଲେ ବି ଶାରିରୀକ ସାମର୍ଥ୍ୟ କେତେ ଯେ ଦିନରାତି ଆତଯାତ ପଶୁମାନଙ୍କୁ କରାୟତ କରିପାରିବ ?

ଶିତଳା ନିଜକୁ ପ୍ରଶ୍ନ କରୁଥିଲା ।

ସିଆରପି କ୍ୟାମ୍ପସ୍ ଭିତରେ ବ୍ରିଗେଡିୟର ସିଂଙ୍କ କଥାକୁ ଏଡାଇ ଯିବାକୁକେହି ନଥିଲେ ।

ଜଙ୍ଗଲ ଭିତରେ ସିଂହ ଖୋଲପାରେ ହେଟା । ଏତିକି କହି ଚୁପ୍ ରହିଲି ମୁଁ । କାରଣ ମୋତେ ଲାଗୁଥିଲା ସୁବିର ମୋ କଥାରେ ସେମିତି କିଛି ଆଗ୍ରହ ଦେଖାଉନି ।

ଶିତଳାର ଜୀବନ ବୋଧହୁଏ ତା ପାଇଁ ରୋମାଞ୍ଚଶୂନ୍ୟ । ମୋର ପ୍ରଗଳ୍ଭତା କଣ

ଶିତଲାଙ୍କ ପ୍ରତି ଦୁର୍ବଳତା !

ହଠାତ୍ ଖବରକାଗଜ ପୃଷ୍ଠାରେ ପରିଚିତ ସୁନ୍ଦର ମୁହଁଟିକୁ ଦେଖି ଚମକି ପଡିଲି । ସମ୍ବାଦଟି ଥିଲା ପ୍ରମୁଖ ଓକିଲ ମିଃ ସତ୍ୟଜିତ୍ ଦାସଙ୍କର ସମାଜସେବିକା ନାରୀନେତ୍ରୀ ସୀତାଦେବୀଙ୍କ ପ୍ରତି ବଳାତ୍କାର ।

ମିଃ ସତ୍ୟଜିତ୍ ଦାସ ମାନ୍ୟଗଣ୍ୟ ବ୍ୟକ୍ତି । ସରକାର ମୁଖ୍ୟ ମହାମନ୍ତ୍ରୀଙ୍କର ଖାସ୍ ପ୍ରିୟପାତ୍ର । ତାଙ୍କ ବାସଭବନରେ ଏହି ବଳାତ୍କାର ସମ୍ବାଦ ମୁଖରୋଚକ ଭାବେ ସବୁ ଓଡିଆ କାଗଜରେ ବିଞ୍ଚିହୋଇ ପଡିଥିଲା ।

ଟେଲିଫୋନ୍‌ରେ ଦୂରଗାମୀ କଲ୍‌ର ଶବ୍ଦ ।

"ହାଲୋ ! ହାଲୋ !"

"ହଁ, ସୁବିର ! କଣ ହେଲା ?"

"କଣ କହୁଛୁ ? ତୋତେ ସୀତାଦେବୀଙ୍କ ନ୍ୟୁଜ୍ ପଠାଇବି । କିନ୍ତୁ କାହିଁକି ?"

ସୁବିର ଇଣ୍ଡିଆନ୍ ଏକ୍ସପ୍ରେସ୍‌ରେ ଭାଇଜାଗ୍ ଏଡିସନ୍‌ରୁ ଏକଥା ଜାଣିବାକୁ ପାଇ ବିଶଦ୍ ଜାଣିବାକୁ ଚାହିଁଥିଲା ।

ସୀତାଦେବୀଙ୍କ ଫଟୋ ଶିତଲାଙ୍କ ରୂପ ସହିତ ମେଳ ଖାଉଥିଲା । ଯେପରିକି ସୀତାଦେବୀଙ୍କ ଫଟୋ ଥିଲା ଶିତଳାର ଫଟୋ ।

ହାଇଦ୍ରାବାଦ ଯିବାବେଳର ତାଙ୍କ ଅନୁରୋଧକୁ ମୁଁ ଭୁଲି ଯାଇଥିଲି, ମୋର ସ୍ୱଭାବଗତ ଗୁଣ ଯୋଗୁ ।

ଖବରକାଗଜରେ ସୀତାଦେବୀଙ୍କ ପ୍ରତି ବଳାତ୍କାରର ନିଖୁଣ ଚିତ୍ର ଥିଲା କୌଣସି ସେକ୍ସ ନଭେଲର ଏକ ଅଂଶ ।

ନିବୁଜ ଘରଟି ଭିତରେ ମିଃ ସତ୍ୟବ୍ରତ ଦାସ ସୀତାଦେବୀଙ୍କ କାନ୍ଧରେ ନିଜର ହସ୍ତ ସ୍ଥାପନ କରି, ତାଙ୍କୁ ଭିଡି ନେଇଥିଲେ ନିଜର ମୋଲାୟାମ ବିଛଣାକୁ । ତାଙ୍କର ଶାଲ୍‌ୱାର ପଞ୍ଜାବୀ ଅଭ୍ୟସ୍ତ ଖେଳାଳୀର ସ୍ପର୍ଶରେ ଦୂରକୁ ଛିଟିକି ପଡିଲା । ମିଃ ଦାସଙ୍କର ମେଦବହୁଳ ସଂପୂର୍ଣ୍ଣ ନଗ୍ନ ଶରୀର ଭିତରେ ସୀତାଦେବୀ ହୋଇ ପଡିଥିଲେ ଆଉଟୁ ପାଉଟୁ ।

ନଖଦାନ୍ତର ଅପର୍ଯ୍ୟାପ୍ତ ଚିହ୍ନ......

ବିକ୍ଷିପ୍ତ କେଶ ଓ ବୋତାମହୀନ ପଞ୍ଜାବୀରେ ତାଙ୍କୁ ସକ୍ ସକ୍ କାନ୍ଦି ବାହାରିଥିବାର ଏକମାତ୍ର ସାକ୍ଷୀ ତାଙ୍କର ଘରୋଇ ଚାକରାଣୀ ସାବିତ୍ରୀ ।

ସାବିତ୍ରୀ ମୂକ । ଜନ୍ମରୁ ଜାଡି ।

ଓଡିଆ ଖବରକାଗଜର ଏହି ମୁଖରୋଚକ ସମ୍ବାଦ ପ୍ରଥମ ପୃଷ୍ଠା ମଣ୍ଡନ କରିଥିଲା । ଶିରୋନାମା ଥିଲା, ବିଶିଷ୍ଟ ସମାଜସେବିକା ନାରୀନେତ୍ରୀ ସୀତାଦେବୀଙ୍କ ପ୍ରତି ବଳାତ୍କାର । ବରିଷ୍ଠ ଆଇନଜ୍ଞ ମିଃ ସତ୍ୟବ୍ରତ ଦାସଙ୍କର ନାରୀ ନେତ୍ରୀ ସୀତାଦେବୀଙ୍କୁ ଧର୍ଷଣ ।

ସତ୍ୟବ୍ରତଙ୍କ କ୍ରୋଡରେ ନିବୁଚ ବନ୍ଧନରେ ରୂପଶ୍ରୀ ସୀତା ।

ମିଃ ସତ୍ୟବ୍ରତ ଦାସଙ୍କ ବିରୁଦ୍ଧରେ ବଳାତ୍କାର ଓ ଧର୍ଷଣ ଅଭିଯୋଗ ।

ରାଜଧାନୀ ଉଠୁଥିଲା ଓ ପଡୁଥିଲା ଏହି ସମ୍ବାଦରେ । ସୁବିର ପାଇଁ ଏହି ସମ୍ବାଦ ପଠାଇବାକୁ ହେବ କିପରି ଏ ଚିନ୍ତା ମୋତେ ଯେତେ ଘାରି ନଥିଲା, ଶିତଳାଦେବୀ କିପରି ସୀତାଦେବୀରେ ରୂପାନ୍ତରିତ ହେଲେ ଓ ତାଙ୍କ ଜୀବନ ନାଟକରେ ପୁଣି ଏପରି ନାଟକ କାହିଁକି ମଞ୍ଚସ୍ଥହେଲା, ତାହା ମୋତେ କେବଳ ପ୍ରହେଳିକା ନୁହେଁ, ବରଂ ଜଳଭଉଁରୀ ପରି ଲାଗୁଥିଲା ।

ଟେବୁଲ ଉପରେ ଥାକ ଥାକ ହୋଇଥିବା ଭିଜିଟିଂ କାର୍ଡ ଓଲଟାଇବାରେ ହାତ ଲାଗିଥିଲା ଓ ଆଖି ସେଥିରୁ ଖୋଜୁଥିଲା ଠିକଣା ଶିତଳା ଦେବୀଙ୍କର ।

ମିସେସ୍ ଶିତଳା, କ୍ୱାର୍ଟର ନଂ-ଏମ୍ଆଇଜି-୨୩୧, ଭିଆଇପି କଲୋନୀ, ଶୈଳଶ୍ରୀ ବିହାର, ଭୁବନେଶ୍ୱର - ୭୫୧୦୦୧୭, ଫୋନ୍ ନଂ - ୪୪୩୨୧୧

ମୋର ଟ୍ରେନ୍ ଯାତ୍ରା କଥା ମନେ ପଡୁଥିଲା । ସେ ମୋତେ ବାରମ୍ବାର କହୁଥିଲେ, ଆପଣ ଆମ କଥା ଲେଖୁନାହାନ୍ତି କାହିଁକି ?

ମୁଁ ତାଙ୍କୁ ପଚାରିଥିଲି, ଆପଣ କଣ ମୋ ଗପର ନାୟିକା ହେବେ ।

ନାୟିକା ହେବାର ସମସ୍ତ ସୁଯୋଗକୁ ନେବାପାଇଁ ମୋର ବଢିଥିବା ଆଗ୍ରହର ପ୍ରଥମ ସ୍ପର୍ଶ ଥିଲା ମୋ ଟେଲିଫୋନ୍ ।

ହାଲୋ ! ହାଲୋ !

ରିଂ କ୍ରମାଗତ ଚାଲିଥିଲା ।

ଦୁଇ ତିନିଥର କ୍ରମାଗତ ସେହି ନମ୍ବରକୁ ଡାଏଲ କଲି ।

କେବଳ ରିଂ । ହୁଏତ ଟେଲିଫୋନ ଖରାପ ଥାଇପାରେ... କେହି ହୁଏତ ନଥାଇ ପାରନ୍ତି... ଥାଇ କରି ଉଠାଉ ନଥିବେ, ଏହିପରି ନାନା କଳ୍ପନା ମୋତେ ଘାରିଥାଏ ।

ମୋତେ ସାକ୍ଷାତ କରିବାକୁ ହେବ ସୀତା ଦେବୀଙ୍କୁ । ମୁଁ ବାରମ୍ବାର ସ୍ୱଗତୋକ୍ତି କରି କହିଚାଲିଥାଏ ।

ସୀତାଦେବୀ... ଶିତଳା ଦେବୀ...

ଶୈଳଶ୍ରୀ ବିହାର ନିକଟରେ ପହଞ୍ଚି ଘରଟିକୁ ଖୋଜିବାକୁ ପଡିଲା ନାହିଁ । ମେନ୍‌ରାସ୍ତା କଡରେ ।

ବଡ ବଡ ଅକ୍ଷରରେ ଲେଖାଥିଲା, ନାରୀ ନିକେତନ ।

ବିରାଟ ଘର । ଧବଳ ବର୍ଣ୍ଣର ଘରଟିକୁ ସୂର୍ଯ୍ୟଙ୍କର କିରଣ ଆବୋରି ଦେଇଛି । ବାହାରେ ଅସଂଖ୍ୟ କାର୍, ଜିପ୍, ଅଟୋ, ସ୍କୁଟର । ଗାଡି ଗୁଡିକୁ ନିୟନ୍ତ୍ରଣ କରୁଛି, ଟ୍ରାଫିକ୍ କନେଷ୍ଟବଳ ।

କଲୋନୀର ଅଧାଲୋକଙ୍କ ମେଳା ଜମିଛି ବାହାରେ । ନିଜ ଭିତରେ ଗରମା ଗରମ ଆଲୋଚନା । ବିଷୟବସ୍ତୁ ହେଉଛି ସୀତାଦେବୀଙ୍କ ପ୍ରତି ବଳାତ୍କାର ।

ଟୋକାମାନଙ୍କ ଭିତରୁ କେହି କେହି କହୁଛି, ଖବରକାଗଜରେ ଧର୍ଷଣ ବା ବଳାତ୍କାର ସିନା ଲେଖାଯାଇଛି, କିନ୍ତୁ ତା ଭିତରେ କଣ ହୋଇଛି..... ନିବୁଜ କୋଠରୀ.... ବୋତାମ ଖୋଲା ପଞ୍ଜାବୀ ।

ସତ୍ୟବ୍ରତ ଦାସ ଓ ସୀତାଦେବୀଙ୍କୁ ଜଣା..... ।

ଏକଥା ଆଉ କିଏ କହିଛି କି ? ସୀତାଦେବୀ ନିଜେ ପରା ପୁଲିସ୍ ଥାନାରେ ତିନିଦିନ ପରେ ଏତାଲା ଦେଇଛନ୍ତି ।

ଯଦି ଧର୍ଷିତା ହେଲ, ସିଧା ଯାଇଥାନ୍ତ ଥାନାକୁ । ଏଫଆଇଆର ଦେଇଥାନ୍ତ । ନଚେତ୍ କୋର୍ଟ । ମହାମନ୍ତ୍ରୀଙ୍କୁ ଫେରାଦ ହେବାକୁ ଯାଇଥିଲ କାହିଁକି ?

ମହାମନ୍ତ୍ରୀ ତାଙ୍କର ଖାସ୍‌ଲୋକ । ସତ୍ୟବ୍ରତ ଦାସଙ୍କ ଜରିଆରେ ପହଞ୍ଚିଥିଲେ ମହାମନ୍ତ୍ରୀଙ୍କ ପାଖରେ ।

ଆମ ମହାମନ୍ତ୍ରୀଙ୍କର ନାରୀମାନଙ୍କ ପ୍ରତି ବହୁତ ଦୟା । ନାରୀ ନିର୍ଯ୍ୟାତନା, ନାରୀ ଧର୍ଷଣ, ନାରୀ ହତ୍ୟା ଇତ୍ୟାଦି ଜାଣିବା ମାତ୍ରେ ପୁଲିସ୍‌କୁ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେବା ସହିତ ତାଙ୍କ ରିଲିଫ୍ ପାଣ୍ଠିରୁ ଅର୍ଥ ବ୍ୟବସ୍ଥା କରିଥାନ୍ତି ।

ଧନ୍ୟ କହିବ ମହାମନ୍ତ୍ରୀଙ୍କୁ । ଦିନ ସାରାର ସବୁ ପରିଶ୍ରମ ସତ୍ତ୍ୱେ ରାତି ଦଶଟାଠାରୁ ଆରମ୍ଭ ହୁଏ ମହଲାମାନଙ୍କୁ ସାକ୍ଷାତ କରିବା । ସେମାନଙ୍କର ଭଲ ମନ୍ଦ ବୁଝିବା ।

ହଁ ମ ! ସୀତାଦେବୀଙ୍କର ନାରୀ ନିକେତନ ତ ମହାମନ୍ତ୍ରୀଙ୍କ ଦୟା । ନାରୀ ନିକେତନ ଅନ୍ତେବାସୀମାନେ ମହିଳାକର୍ମୀମାନଙ୍କୁ ରାଜ୍ୟସାରା ବୁଲି ତାଲିମ ଦିଅନ୍ତି ।

ସୀତାଦେବୀ ଆମ ମହାମନ୍ତ୍ରୀଙ୍କ ଦ୍ୱାରା ଗଠିତ ମହଳା ପ୍ରଗତି ଯୋଜନାର ଉପାଧକ୍ଷ ।

ଏଇ ଦେଖୁନା,ଯେବେଠାରୁ ସୀତାଦେବୀ ଏଇ ଶୈଳଶ୍ରୀ ବିହାରକୁ ଆସିଲେଣି, ସେବେଠୁ ଏ କଲୋନୀର ବହୁ ଉନ୍ନତି । ବାରମ୍ବାର ମହାମନ୍ତ୍ରୀଙ୍କର ଆତଯାତ ।

ସତ୍ୟବ୍ରତ ଦାସ କିଏ କି ? ଲମ୍ବା ଗୋରା ଅଧାବୟସ୍କ ମଣିଷଟାତ । ଏନ୍‌ଇ ୧୧୮ଇ ଗାଡି ଚଢନ୍ତିଟି । ହଇହୋ, ସତ୍ୟବ୍ରତ ଦାସଙ୍କୁ ଜାଣିନ ଅଥଚ ତା ଗାଡି ବିଷୟରେ କହୁଛ ?ସେମିତିକା ଗାଡି ଦେଖିଛି ଏଇଠି । ଡେଙ୍ଗା ଗୋରା ମଣିଷଟିଏ ଆସେ ସୀତାଦେବୀଙ୍କୁ ଦେଖିବାକୁ ଦିନେ ଦିନେ ରାତି ଦଶଟା ପରେ ।

ବଡ ଘର ବଡ ଗୁମର କଥା । ଆମର ସେଥିରେ ମୁଣ୍ଡ ପୁରାଇ ଲାଭ କଣ ? ସେ ଧର୍ଷିତା ହୁଅନ୍ତୁ କି ବଳାତ୍କାର, ଆଇନ୍ ତା ବାଟର ଯିବ । ମହାମନ୍ତ୍ରୀ ଚାହିଁଲେବି ରକ୍ଷା କରିପାରିବେନି । ସୀତାଦେବୀ କଣ କମ୍‌ମାଲ୍ କି ? ଓଡିଆଣୀ ନୁହେଁ । ଏଇଠି ରହି ଯାଇଛନ୍ତି ତାଙ୍କ ସ୍ୱାମୀ ଆର୍ମି ଅଫିସର । ଏକ୍ସିଡେଣ୍ଟରେ ମରିଗଲେ । କେହି କେହି ସେହି କଲୋନୀରେ କୁହନ୍ତି ସୀତାଦେବୀ ତାଙ୍କ ସ୍ୱାମୀଙ୍କୁ ମାରିଦେଲେ ବ୍ରିଗେଡିୟର ସିଂଙ୍କ ପାଇଁ ।

ବ୍ରିଗେଡିୟର ସିଂ ଶିତଳାଙ୍କ ରୂପ ଦେଖି ଭୋଳ ତାଙ୍କ ସ୍ୱାମୀ ଶୋଭନକୁ ବାହାର ଡ୍ୟୁଟିରେ

ପଠେଇ ଦେଇ ନିଜେ ମିଃ ଆସନ୍ତି ଶିତଳାଙ୍କ ଘରକୁ ସଂଧ୍ୟା ପରେ ବାସ୍ ବନ୍ଧୁତା... ଦିନେ ଦିନେ ରାତିରେ ସେଇଠି ଶୋଇ ପଡନ୍ତି ।

ଶୋଭନ ଥରେ ଦୁଇଥର ସେମାନଙ୍କୁ ଦେଖିଲେ ମହାମନ୍ତ୍ରୀ ଓ ମିଃ ସିଂକୁ ତାଙ୍କ ଘରେ ଦେଖି ଶୋଭନ କହିଲେ, ଆଇ ଆମ୍ ସରି ସାର୍ । ୟୁ ଆର ମୋଷ୍ଟ ୱେଲ୍‌କମ୍ ସାର୍ । ଆଇ ।ଆମ୍ ଲିଭିଂ ଫର୍ କଟକ ସାର୍ ।

ହଁ ହୋ; ସେଇ ଶିତଳା ଦେବୀ ହେଉଛନ୍ତି ସୀତାଦେବୀ । ନାରୀ ନିକେତନର ମୁଖ୍ୟ ପରିଚାଳିକା ।

ପ୍ରବଳ ଗହଳ ଭିତରେ ଭଳିକି ଭଳି ଆଲୋଚନାର ଖିଅକୁ ଯୋଡୁଥିଲି ମୁଁ । ଦେଶ ବିଦେଶ ଗଣ ମାଧମମାନଙ୍କର ଶବ ପାଖରେ ଶାଗୁଣାଙ୍କ ଭିଡ ପରି ଶୈଳଶ୍ରୀ ବିହାରର ଏମ୍ ଆଇ ଜି ୨୩୮ ଗୃହାଙ୍ଗନ ପାଇଟି ଯାଇଥିଲା । ଭିଡ ଠେଲି ଭିତରକୁ ଯିବାକୁ ଇଚ୍ଛା କଲି । ଅନେକ ଦିନ ପରେ ତାଙ୍କୁ ଦେଖିବି । ଟ୍ରେନ୍ ଯାତ୍ରା ପରେ ତାଙ୍କ ସହିତ ସାକ୍ଷାତ ହୋଇନି । ମୁଁ ଜାଣେନି ସେ ମୋତେ ଚିହ୍ନିବେ କି ନାହିଁ । ଅନ୍ତତ ପକ୍ଷେ ମୁଁ ତ କହିପାରିବି; ମୁଁ ଆପଣଙ୍କ ବିପଦର ସାଥୀ ଓ ବନ୍ଧୁ ।

ଉପର ମହଲାରେ ପାଦଦେଇ ଦୁଆର ମୁହଁକୁ ଚାହିଁଲି । ଅନତି ଦୂରରେ ସୀତାଦେବୀ ଜଣକ ପରେ ଜଣକ ପ୍ରଶ୍ନର ଉତ୍ତର ଦେଉଛନ୍ତି । ବର୍ଣ୍ଣନା କରୁଛନ୍ତି ଧର୍ଷଣ ହୋଇଥିବାର ଘଟଣା । ପାଖରେ ମୂକସାକ୍ଷୀ ସାଲୱାର ଓ ପଞ୍ଜାବୀ । ବାଳ ବିକ୍ଷିପ୍ତ ହୋଇ ବାତ୍ୟା ବିଧ୍ୱଂସ୍ତ ଜଙ୍ଗଲର ସୂଚନା ଦେଉଛି । ଅଶୋକ ବାଟିକା ତଳେ ସୀତାଦେବୀ ରାକ୍ଷସ ଦ୍ୱାରା କିପରି ଧର୍ଷିତା ହେଲେ, କେଉଁ କେଉଁ ଅଙ୍ଗରେ ସେଇ ଚିହ୍ନକୁ ସେ ଶ୍ରୀବସ୍ତ ଲାଞ୍ଛନ ସୁଦୃଶ୍ୟ ଧରିଛନ୍ତି, ତାହା ବର୍ଣ୍ଣନା କରି ଯାଉଥାନ୍ତି ।

ମୁଁ ତାଙ୍କୁ ଚାହିଁବାକୁ ଚେଷ୍ଟାକଲି ।

ଚାରିଚକ୍ଷୁ ଅବଶ୍ୟ ପରସ୍ପର ଉପରେ ନିବଦ୍ଧ ହେଲେ, ଆକାଶରେ ବିଦ୍ୟୁତ୍‌ର ଝଟକା ପରି । ହଠାତ୍ ଗଣ ମାଧମର କ୍ୟାମେରା ଓ ସମ୍ବାଦଦାତାମାନଙ୍କର ଦୌଡ ।

ମହାମନ୍ତ୍ରୀ ଆସୁଛନ୍ତି.... ମହାମନ୍ତ୍ରୀ ନାରୀନେତ୍ରୀ ସମାଜସେବିକା ସୀତାଦେବୀଙ୍କୁ ନିରାପତ୍ତା ଯୋଗାଇ ଦେବାପାଇଁ ଓ ସରଜମିନ୍ ତଦନ୍ତ ପାଇଁ ଶୈଳଶ୍ରୀ ବିହାରକୁ ଆଗମନ କରିଛନ୍ତି ।

ମହାମହିମ, ମହାପ୍ରତାପୀ, ମହାନ୍ ନେତା ମହାମନ୍ତ୍ରୀଙ୍କର ଆଗମନର ସମ୍ବାଦ ଅଶୋକ ବାଟିକାରେ ହଇଚଇ ମଚାଇ ଦେଇଥିଲା ।

ମୁଁ ମୋର ଆଖି ଦୁଇଟିକୁ ଚିହ୍ନା ଆଖି ସାଙ୍ଗରେ ମିଶାଇବାକୁ ବାରମ୍ବାରଏମୁଣ୍ଡରୁ ସେମୁଣ୍ଡ ଯାଏ ଘୁରାଉଥିଲି ।

ଯେଉଁ ଦିଗକୁ ଚାହୁଁଥିଲି ଦେଖୁଥିଲି କେବଳ ମୋର ଆଖି ।

ମହାମହିମ ମହାମନ୍ତ୍ରୀ ନିବୁଚ୍ କୋଠରୀରେ ଧର୍ଷିତା ନାରୀନେତ୍ରୀ ସୀତାଦେବୀଙ୍କର ସୁରକ୍ଷା ଯାଞ୍ଚ କରୁଥିଲେ ।

ମୁଁ ସୁବିର ପାଖକୁ ତାର ଆନ୍ତର୍ଜାତିକ ରିପୋର୍ଟ ପାଇଁ ଫ୍ୟାକ୍ସ ପଠାଇ ସେଥିରେ ଲେଖିଦେଲି, "ଗାନ୍ଧିଜୟନ୍ତୀ ଦିବସରେ ଗାନ୍ଧିଙ୍କ ପାଦତଳେ ନାରୀ ସୁରକ୍ଷାପାଇଁ ମହାମନ୍ତ୍ରୀଙ୍କ ଦ୍ୱାରା ସୀତାଦେବୀ ଓ ଆଇନ୍ ବିଶେଷଜ୍ଞ ଶ୍ରୀ ସତ୍ୟବ୍ରତ ଦାସଙ୍କୁ ସେମାନଙ୍କର ବିଶେଷ ସମାଜ ସେବାପାଇଁ ସମ୍ବର୍ଦ୍ଧିତ କରାଯାଇଛି ।"



# ଫେରିବାର ବେଳ

ନିର୍ବାଚନ ଦିନ ପାଖେଇ ଆସୁଥିଲା । ଆଉ ମାତ୍ର ପାଞ୍ଚଦିନ ବାକି । ଭୋଟ ହେବ । କାହାକୁ ଭୋଟ ଦେବ ସବିତା ରେଡ୍ଡି ? ଭୋଟ ନ ଦେଇ ସେ କଣ ରହିପାରିବ ? ଭୋଟ ଦେବାର ନାଗରିକ ଅଧିକାର ସେ ପାଇଛି । ଗତ ତିନିଟା ନିର୍ବାଚନରେ ସେ ଭୋଟ ଦେଇଛି । କେବଳ ଭୋଟ ଦେଇନି, ପ୍ରଚାର ମଧ୍ୟ କରିଛି ।

ସବିତା ରେଡ୍ଡି ଏ ଗାଁକୁ ଆସିବା ଆଜକୁ ଦଶବର୍ଷ । ବୋହୂ ହୋଇ ଆସିଥିଲା ଏଇ ଗାଁକୁ ଶ୍ରୀକାକୁଲମ୍‌ରୁ । ଓଡିଶା ଓ ଆନ୍ଧ୍ର ବର୍ଡର । ତେଲୁଗୁ କହିଲେ ବି ଓଡିଆ ବୁଝିପାରେ । ତା ବାପା ବ୍ରହ୍ମପୁରରୁ ଉଠିଯାଇ ଶ୍ରୀକାକୁଲମ୍‌ରେ ଅନେକ ବର୍ଷ ହେଲା ରହିଯାଇଛନ୍ତି । ପ୍ରାଥମିକ ସ୍କୁଲର ମାଷ୍ଟର । ଅଳ୍ପ ଦରମାରେ ଚାକିରୀ ଆରମ୍ଭ କରିଥିଲା ସେ । ଲାଗଲାଗ ତିନୋଟି ଝିଅ । ପୁଅ ହେଲେନି । ସବିତା ବଡ । ବାପା ଏମ୍. ଶ୍ରୀରାମୁଲୁ ଝିଅମାନଙ୍କୁ ପାଠ ପଢେଇଲେ । ନିଜେତ ପ୍ରାଇମେରୀ ସ୍କୁଲ ଶିକ୍ଷକ । ଅନ୍ତତଃ ପକ୍ଷେ ଝିଅମାନେ ସେତକ ପାଶ୍ କରନ୍ତୁ । ବେଳକାଳ ଦେଖି ଉଠେଇ ଦେବାକୁ ହେବ ।

ସବିତା କିନ୍ତୁ ଭଲ ପଢେ । ଶ୍ରୀକାକୁଲମ୍ ହାଇସ୍କୁଲରୁ ମାଟ୍ରିକ୍ ପାଶ କରିବା ପରେ ଟ୍ରେନିଂ ନେଲା ହ୍ୟାଣ୍ଡିକ୍ରାଫ୍‌ଟରେ । କିଛି ଟଙ୍କାତ ଘରେ ବସି ରୋଜଗାର କରାଯାଇପାରିବ । ଆଜିକାଲି ଚାକିରୀ ଯେଉଁ ମହରଗ । ସେଥିକୁ କିଏପୋଚେଇ । ଧନ ଥିଲେ ସିନା ମନ । ସବିତା ଜାଣେ ବାପ ତାର ପ୍ରାଥମିକ ସ୍କୁଲ ଶିକ୍ଷକ ହେତୁ ବାହାଘରେ ବେଶୀ ଦେଇନେଇ ପାରିବ ନାହିଁ । ବାପ ଉପରେ କାହିଁକି ସେ ବୋଝ ହେବ ! ତା ତଳକୁ ଆହୁରି ଦୁଇ ଭଉଣୀ ।

ଶ୍ରୀକାକୁଲମ୍‌ରେ ଅନାବାଦୀ ଜମି ଉପରେ ଖଣ୍ଡେ ଟାଇଲ ଘର । ଘର ଭଡା ନ

ଦେଇପାରି, ଶେଷକୁ ଏଇ ବ୍ୟବସ୍ଥା କରିବାକୁ ହୋଇଥିଲା ଶ୍ରୀରାମୁଲୁଙ୍କୁ । ନିଜ ନାଁକୁ ଭୋଟର ଲିଷ୍ଟରେ ଚଢେଇ ଦେବା ସଂଗେ ସଂଗେ ଜମି ଖଣ୍ଡକ ଦଖଲରେ ରହିଥିବାର ଦରଖାସ୍ତ ମଧ୍ୟ କରିଦେଇଥିଲେ । ତହସିଲ ଅଫିସରେ କିରାଣୀଙ୍କୁ କିଛି ହାତ ଗୁଞ୍ଜା ଦେଇ ରେଭିନ୍ୟୁ ଇନ୍‌ସ୍ପେକ୍ଟର ଜରିଆରେ ତାଙ୍କର ଦଖଲ ସତ୍ତ୍ୱ ସିନା ହାସଲ କରିଛନ୍ତି, କିନ୍ତୁ ଏଯାବତ୍ ତାଗିଦା କରିନାହାନ୍ତି ବା ତା ଉପରେ କିଛି ନୋଟିସ୍ ଲାଗିନି ।

ଶ୍ରୀରାମୁଲୁ ସେଠାରେ ରହିବା ପ୍ରାୟ ୪୦ ବର୍ଷ ହେଲାଣି । ଲୋକେ ତାଙ୍କୁ ଭଲ ପାଆନ୍ତି । ଦୁଃଖସୁଖର ମଣିଷ । ହସି ହସି ପରକୁ ଆପଣାର କରିପାରୁଥିବା ମଣିଷ । ଝିଅ ତିନୋଟି ବାପର ଗୁଣ ନେଇଛନ୍ତି ବୋଲି ସେଠାକାର ଲୋକେ କୁହାକୁହି ହୁଅନ୍ତି । ବେଶୀ ସ୍ୱଚ୍ଛଳ ସିନା ନୁହଁନ୍ତି, କିନ୍ତୁ ଚଳିଯାନ୍ତି ଦୁଃଖକଷ୍ଟକୁ ଆଦରି । ସବିତା ଜାଣେ ତା ଭାଗ୍ୟ ଯାହା ସହିତ ବନ୍ଧାହେବ, ସେ ମଧ୍ୟ ତା ପରିବାର ପରି ହୋଇଥିବ । ଗରିବ ଘରର ଝିଅ ଧନୀ ଘର ସ୍ୱପ୍ନ ଦେଖିବା ଦିନର ସ୍ୱପ୍ନ ପରି । ସ୍ୱପ୍ନ ସିନା ରାତିରେ ଆସେ, ଦିନରେ କେମିତି ଆସିବ । ଯଦି ବି ଆସିବ, ତାହା କେବେ ସତ୍ୟ ହେବନି ।

ସବିତା କେବେ ସ୍ୱପ୍ନ ଦେଖିନି ତାର ଭବିଷ୍ୟତକୁ ନେଇ । ସେ ଜାଣେ ଯାହା ବାସ୍ତବ, ତାହାହିଁ ସତ୍ୟ । ସେ ଗରିବ ଘରେ ଜନ୍ମ ନେଇଛି । ତାକୁ ଗରିବ ହୋଇ ରହିବାକୁ ହେବ । ଗରିବ ହୋଇ ସଂଗ୍ରାମ କରିବାକୁ ହେବ ବଞ୍ଚିବା ପାଇଁ । ସେ କେବଳ ବଞ୍ଚିବନି, ବଞ୍ଚିବେତା ସାଥିରେ ତାର ସ୍ୱାମୀ, ତାର ପୁତ୍ର-କନ୍ୟାମାନେ ।

ମାଟ୍ରିକ୍ ପଢିବା ଦିନରୁ ବୁଝିଥିଲା ସେ ଏକଥା । ବାପ ଯେତେବେଳେ ମାଟ୍ରିକ୍ ପଢା ଶେଷ ପରେ ଆଉ ପଢିବାକୁ ମନା କଲା, ସେ ବାପକୁ ବୁଝାଇ ଦେଇଥିଲା ହ୍ୟାଣ୍ଡିକ୍ରାଫ୍ଟ ତାଲିମ ନେବାପାଇଁ, ତା ବାପ ବିଦ୍ୟାଳୟରେ ଛୋଟ ପିଲାଙ୍କୁ ବୁଝାଇବା ପରି ।

ଶ୍ରୀରାମୁଲୁ ବୁଝିଲେ ସବିତା କଣ ଭାବୁଛି । ସେ ତ ମାଷ୍ଟର । କେତେ ଶିଶୁଙ୍କୁ ଗଢିଲେଣି ସେ । କାଦୁଅ ମେଞ୍ଚାରୁ ମୂର୍ତ୍ତିଟିଏ କରି । ଝିଅ ସବିତା କଥା ବୁଝି ନପାରିବେତ ଆଉ କେଉଁ କଥା ବୁଝିପାରିବେ । ସବିତା ତାଲିମ ନେଲା । ଶିଖିଲା ଅନେକ ଘରକରଣା କାମ । ଘରେ ବସି ରୋଜଗାର କରାଯାଇପାରିବ । ଦୁଃଖସୁଖର ସାଥୀ ହେବ ସେ ତା ସ୍ୱାମୀର । ଗରିବ ପରିବାରର ସମସ୍ତେ ରୋଜଗାରିଆ ନହେଲେ କେମିତି ଚଳିବ ତାର ନିତିଦିନର ସଂସାର ।

ସଂସାର ବୋଝ କଣ କମ୍ ବୋଝ କି ! ତା ବୟସ କୋଡିଏ ହେବା ବେଳକୁ ସେ ତା ମା ଓ ବାପାର ଅଧା ବୋଝକୁ ମୁଣ୍ଡରେ ଥୋଇ ଚାଲିବାକୁ ଅଭ୍ୟାସ କରି ଦେଇଥିଲା । ତା ନହୋଇଥିଲେ କଣ ଯେ ହୋଇଥାନ୍ତା । ବର୍ତ୍ତମାନ ତାର ଅବସ୍ଥା, କିଏ କହିପାରନ୍ତା ।

ଘର ଦୁଆର ମୁହଁରେ ବସି ସବିତା ଚାହିଁଲା ଆଗକୁ । ଆଗରେ ନଡିଆ ଗଛ ଓ କିଆ ବୁଦା । ଦଶବର୍ଷ ତଳେ ଯେମିତି ଥିଲା ଠିକ୍ ସେଇମିତି । କିଛି ପରିବର୍ତ୍ତନ ହୋଇନି । ସେଇ ଘର ଯେପରି ତା ବାପାର ଘର ପରି । ବ୍ରହ୍ମପୁରଠାରୁ ପନ୍ଦର କିଲୋମିଟର ଦୂର ହେବ । ସୁନ୍ଦରିଆ

ନାଁଟି ତାର । କମାଖଣ୍ଡି । ଏଇଟି ପାରାୟଣ ରେଡ୍ଡିର ଘର ।

ପାରାୟଣ ରେଡ୍ଡି ବାପ ମା ଛେଉଣ୍ଡ ପ୍ରାୟ କୋଡ଼ିଏ ବର୍ଷତଳୁ । ତା ବାପ ଶ୍ରୀକାକୁଲମରୁ ଆସି ଏଇଠି ନଡିଆ ବ୍ୟବସାୟ ଓ କିଆ ଫୁଲ ବିକ୍ରୀ କରିବାକୁ ରହିଯାଇଥିଲା । ସମୁଦ୍ର କୂଳରେ ନୋଳିଆମାନଙ୍କର ଚାଳଘର ପରି ଏଇ କମାଖଣ୍ଡିଠାରେ କ୍ରମେ କ୍ରମେ ଶହେ, ଦୁଇଶହ ଆସି ରହିବାକୁ ଲାଗିଲେ ।

ସମୁଦ୍ର ବାଲି ଥିଲା ଏ ଅଞ୍ଚଳ । ଏ ବାଲିରେ ଅଳ୍ପ ମାଟି ଥିବାରୁ ଭଲ ନଡିଆ ଓ କିଆ ହେବ । ତାହା ଜାଣିଥିଲା ପାରାୟଣ ରେଡ୍ଡିର ବାପ । କମାଖଣ୍ଡି ତାଙ୍କର ହାତଗଢ଼ା ଗାଁ ।

ଯୋଡ ହସ୍ତରେ ମୁଣ୍ଡକୁ ଛୁଇଁଲା ସବିତା ଶ୍ୱଶୁରଙ୍କ ଉଦ୍ଦେଶ୍ୟରେ । ସେ ଦେଖିନି ତାଙ୍କୁ । ଘରେ ଟଙ୍ଗା ହୋଇଛି ଶାଶୁ ଶ୍ୱଶୁରଙ୍କ ଫଟୋ । ସଞ୍ଜେ ସକାଳେ ବେକରେ କାନି ପକେଇ ସେ ମୁଣ୍ଡିଆ ମାରେ । ପାରାୟଣ ରେଡ୍ଡି ସବିତାର ଏମିତି ଧର୍ମ କର୍ମରେ ଖୁସି ହୁଏ, କେବେ କେବେ ଚିଡିଯାଏ ବି ।

ଦର୍ଶବର୍ଷ ତଳେ ସବିତା ଧରିଥିଲା ହାତ ପାରାୟଣର । ଶ୍ରୀକାକୁଲମ୍ ସହରକୁ କୋଉଁ କାମରେ ଯାଇଥିଲା ପାରାୟଣ ସେ କଥା ସବିତା ଜାଣେନି, କିନ୍ତୁ ଯେଉଁଦିନ ତା ସହିତ ଦେଖାହୋଇଥିଲା ସେଦିନ ବର୍ଷା ଜୋରସୋରରେ ହେଉଥିଲା । ନାହିଁ ନଥିବା ବର୍ଷା । ରାସ୍ତାରେ ଥିବା ଖାଲଗୁଡ଼ିକ ପୂରି ଯାଇଥିଲା । ଯିବା ଆସିବା ବନ୍ଦ ହୋଇଯାଇଥିଲା ଲୋକମାନଙ୍କର । ସବିତା ଫେରୁଥିଲା ତାର ଘର ଆଡକୁ ସହର ସେମୁଣ୍ଡରୁ । ସାଇକେଲ୍‌ଟା ପାଣି ତଳେ ଥିବା ଖାଲ ଭିତରେ ପଡିଗଲା ତା ଅଜାଣତରେ । ଆଃ ! କି କଷ୍ଟ ସେଦିନ । ଢୋ କରି ଗଛ କାଟିବା ପରି ଏମିତି ପଡିଲା ଯେ ଯଦି ପାରାୟଣ ପାଖରେ ନଥାନ୍ତା ଓ ତାର ସାହାଯ୍ୟ ତାକୁ ମିଳି ନଥାନ୍ତା, ତେବେ ସେ ଆଜି ଯେମିତି ଦୁନିଆଁକୁ ଦେଖୁଛି, ସେତକ ଦେଖି ନଥାନ୍ତା ।

ଖୁବ୍ ଜୋର୍‌ରେ ବହୁଥିବା ବର୍ଷା ପାଣିରେ ସେ ବୁଡିଯାଇ ଖାଲି ଓଦାଡ ହେଲାନି ବରଂ ତା ମୁଣ୍ଡରୁ ଧାର ଧାର ରକ୍ତ ପାଣି ସହିତ ମିଶି ପାଣିରେ ଲାଲ ରଙ୍ଗ ସୃଷ୍ଟି କରିଥିଲା । ସେ ପଡିଥିବା ଖାଲରୁ ନିଜେ ଉଠିବା ସମ୍ଭବ ନଥିଲା । ବର୍ଷା ଏତେ ଜୋରରେ ହେଉଥିଲା ଯେ ପାଖଆଖରେ କେହି ଲୋକ ନଥିଲେ ।

ପାରାୟଣ ତାକୁ ତା ଦି ହାତରେ ଉଠାଇ କାନ୍ଧରେ ପକାଇ ସାଇକେଲ ଗଡାଇ ଗଡାଇ ଆଣିଥିଲା ଡାକ୍ତରଖାନା । ଚେତା ଥାଇ ମଧ ସେ ଅନୁଭବ କରିଥିଲା ଅଚେତ ଅବସ୍ଥା । ପ୍ରାୟ ଦୀର୍ଘଦୁଇଘଣ୍ଟା ପରେ, ନିଜକୁ ଯେତେବେଳେ ସୁସ୍ଥ ଅନୁଭବ କଲା, ସେତେବେଳେ ଆଖି ପୁରାଇ ଦେଖିଥିଲା ପାରାୟଣକୁ । ଗୋରା ହୋଇ ଡେଙ୍ଗା ଚେହେରା । ମୁହଁରେ ଦାଢି । ଆଖିରେ ଭୟର ଲେଶମାତ୍ର ଚିହ୍ନ ନାହିଁ । ଅନ୍ୟକୁ ଭଲ ପାଇବା, ଅନ୍ୟ ପାଇଁ ନିଜ ଜୀବନକୁ ଦେବା ଯେପରି ସେଇ ଆଖି ଦୁଇଟି କହୁଥିଲା । ସବିତା ପାଇଁ ପାରାୟଣ ଥିଲା ତା ଜୀବନର ପ୍ରଥମ ଯୁବକ ।

ସେଦିନ କଥା ମନେ ପଡିଲେ ଲାଜେଇ ଯାଏ ସବିତା । ପାରାୟଣ ଦିନେଦିନେ ଥଟ୍ଟା

କପି କହିବ, ମୁଁ ଦୂରରୁ ଦେଖିଲି ତୁ ପାଣିରେ ଚିତ୍‌କାତ୍ ମୁହଁମାଡି ପଡିଛୁ । ସେଇଠି ସହରଯାକର ମଇଳା ଭାସୁଥାଏ । ଖଣ୍ଡେ ଦୂରକୁ ତୋ ସାଇକେଲ ପଡିଲା । ମନରେ ଭାବିଲି, ବର୍ଷାରେ ତିନ୍ତି ତୋତେ ରକ୍ଷା କରିବାକୁ ଯିବି କି ନାହିଁ ।

ତୋତେ ଉଠାଇ ମୋ କାନ୍ଧରେ ରଖିବା ବେଳକୁ ମୋତେ କଷ୍ଟ ଲାଗିଲା । ଯେମିତି ମହଣେ ବୋଝ । ଡାକ୍ତରଖାନା ପର୍ଯ୍ୟନ୍ତ ସେତକ ରାସ୍ତା ଆସିବା କେତେ କଷ୍ଟ । ସେଥିପାଇଁ ତୁ ଯଦି ପାଞ୍ଚ ଜନ୍ମ ମୋର ସେବା କରୁ, ତେବେ ତୁ ମୋ କରଜରୁ ମୁକ୍ତ ହୋଇପାରିବୁ ନାହିଁ ।

ଏତକ କହିଦେଇ ହସି ପକାଏ ପାରାୟଣ । ସେ ହସରେ ଥାଏ ନିବିଡ ଭଲପାଇବାର ଅଙ୍ଗୀକାର ଭାବନା ।

ସାବି ଚାହେଁ ତାକୁ । କହେନି କିଛି । ମନରେ କିନ୍ତୁ ଭାବୁଥାଏ, ପାଞ୍ଚ ଜନ୍ମ କାହିଁକି ପଚାଶ ଜନ୍ମ ପର୍ଯ୍ୟନ୍ତ ଏଇ ମଣିଷଟି ତାର ମନର ମଣିଷ ହେଲେ ତାର ଆଦୌ ଦୁଃଖ ନାହିଁ ।

ସେ ତ କେବେ ତାକୁ ଏଯାଏ ସେବା କରିବାର ସୁଯୋଗ ବି ଦେଇନି । ରାତିରେ ତା ଗୋଡରେ ହାତ ଲଗାଇବାକୁ ବାରଣ କରିଛି ।

ଆଜି ତା ବାହାଘରର ଦଶ ବର୍ଷ ପରେ ତା ବାଟ ଚାହିଁ ବସିଛି ସାବି ।

ତାକୁ ବାହାହେବା ବେଳେ ତା ବୟସରେ ସେ କିଛି ପଚାରି ନଥିଲା । ପଚାରିବାର ଆବଶ୍ୟକତାକୁ ଅନୁଭବ କରିନଥିଲା ମଧ୍ୟ ।

ଏପରି ପରପାଇଁ ନିଜ ଜୀବନକୁ ବାଜି ଲଗାଉଥିବା ମଣିଷଟିକୁ ନିଜ ଜୀବନର ଦାୟିତ୍ୱ ଦେବାକୁ ସେ ଆଦୌ ସଙ୍କୋଚ କରିନଥିଲା ।

ମୁଣ୍ଡରେ ସିନ୍ଦୁର ଲଗାଇ କମାଖଣ୍ଡିକୁ ଆସିଥିଲା ସେ । ଏଇ ଛୋଟିଆ ଘରଟି ତା ସଂସାରର ଶ୍ରେଷ୍ଠ ଆଶ୍ରୟସ୍ଥଳ ସେଇ ଦିନଠୁ ହୋଇଯାଇଛି ।

ସବିତା ଚାହିଁଦେଖୁଛି ବଡ ବଡ କିଆବୁଦା ଉପରେ ଫୁଲର ବାସନା ତା ଆଡକୁ ଆସୁଛି । ନଡିଆଗଛରେ ନଡିଆ ତାକୁ ଚାହିଁକରି କହୁଛି । ମୋତେ କେବେ ଗଛରୁ ତୋଳିବ । କେତେଦିନ ଆଉ ଅପେକ୍ଷା କରିବୁ ପାରାୟଣ ଆସିବାକୁ ।

ପାରାୟଣର ଯିବା ଆଜକୁ ତିନିବର୍ଷ ହେଲାଣି । ସବିତା ଏଯାଏ ବୁଝିପାରୁନି ତାର ଦୋଷ କଣ ? କାହିଁକି ତାକୁ ନେଇ ଜେଲ ଭିତରେ ରଖି ଦେଇଛନ୍ତି ? ନିଜ ମାଟିକୁ ଭଲ ପାଇବା କଣ ଭୁଲ ?

ପାରାୟଣ ନିଜ ମାଟିକୁ ଭଲ ପାଉଛି । ନଡିଆ ଗଛ, କିଆବୁଦା ତାର ପ୍ରିୟ । କେତେବର୍ଷ ତଳୁ ଏଇ ମାଟିରେ ସେ ବଢିଛି, ଖେଳିଛି, ହସିଛି, କାନ୍ଦିଛି । ତାକୁ ଏଠୁ ଉଠାଇ ଦେବେ କାହିଁକି ?

ସବିତା ଜାଣେ ପାଞ୍ଚବର୍ଷ ତଳୁ ହୋଇଥିବା ଆନ୍ଦୋଳନ କଥା । ସରକାର ଡେଙ୍ଗୁରା ଦେଲେ ଏ ଗାଁ ଛାଡି ଚାଲିଯିବାକୁ ହେବ । ଏଠି ସରକାର କାରଖାନା କରିବେ । ବଡବଡ କାରଖାନା । ବହୁ ଅର୍ଥ ଆସିବ । ଲୋକେ ରୋଜଗାର ପାଇବେ । ଲୋକଙ୍କୁ ଅନ୍ୟଠି ରହିବାକୁ

ଜାଗା ଓ ଘର ମିଳିବ । ସୁନ୍ଦର ସୁନ୍ଦର ଘର । ଇଟା, ବାଲି, କଂକ୍ରିଟ ଓ ସିମେଣ୍ଟରେ ତିଆରି ମଜଭୁତ୍ ଘର । କାମ କରିବେ ଲୋକେ ଫ୍ୟାକ୍ଟେରୀରେ । ମାସକୁ ମାସ ଦରମା, ଭତ୍ତା, ବୋନସ୍ ମେଡିକାଲ ସୁବିଧା, ପ୍ରୋଭିଡେଣ୍ଟ ଫଣ୍ଡ ଓ ଶେଷକୁ ଗ୍ରାଚ୍ୟୁଇଟି ଓ ପେନ୍‌ସନ୍ ।

ଚାକିରୀ । ବରଗଛ ଛାଇ । ଗଛ ତଳେ ବସିଗଲେ କେତେ ଆରାମ । ଟିକିଏ ଥଣ୍ଡା ପବନ ଦେଲେ ମନକୁ ମନ ନିଦ ମାଡିଆସିବ ।

ସରକାରୀ ଅଫିସର ଆସିଲେ । କାରଖାନା ମାଲିକ ଆସିଲେ । ମିଟିଂ ପରେ ମିଟିଂ । ଲୋକଙ୍କୁ ବୁଝାଇ ଦେଲେ ତୁମେ ସବୁ ଏଠୁ ଉଠିଯା । ଏଇ ବାଲିଜାଗାରୁ କଣ ମିଳିବ ତୁମକୁ ? ନଡିଆଗଛରୁ କେତେ ନଡିଆ ପାଇବ ? କିଆବୁଦାରୁ କେତେଟା ଫୁଲ କଣ ତୁମ ବୁଢାକାଳରେ ସାହାଯ୍ୟକାରୀହେବ ?

ଜୀବନ ପାଇଁ ଅର୍ଥ ଦରକାର । ପ୍ରଚୁର ଅର୍ଥ । ଆମେ ତୁମକୁ ଦେବୁ । ଜମି ଦେବୁ, ଘର ଦେବୁ, ଚାକିରୀ ଦେବୁ, ସୁରକ୍ଷା ଦେବୁ । ତା ବଦଳରେ ତୁମେ ଏଠୁ ଚାଲିଯା ।

ପାରାୟଣ କିନ୍ତୁ ବୁଝିଲା ନାହିଁ । ଏ ତା ଜନ୍ମମାଟି । ଏ ମାଟିରେ ସେ କୁଆଁ କୁଆଁ ରାବଦେଇ ଜନ୍ମିଛି । ଏଇଠି ବାଲିଘର କରି ସେ ଖେଳିଛି । ଏଇ ମାଟିର ମହକ ତ ତାକୁ ଭଲ ପାଇବାକୁ ଶିଖାଇଛି । ଏଇ ମାଟି ଯୋଗୁ ତ ସେ ନିଜ ବାପା ମାଙ୍କୁ ହରାଇ ମଧ ବଡ ହୋଇପାରିଛି ।

କେମିତି ହତାଦର କରିବ ସେ ଏଇ ମାଟିକୁ ! କେମିତି ତା ହାତରୁ ଛଡାଇ ଦେବ ଏ ଭୂଇଁକୁ । ଏ ଭୂଇଁ କଣ କେବଳ ତା ପାଇଁ ଭୂଇଁ ? ଏହା ସହିତ ରହିଛି ତାର ଆତ୍ମିକ ସମ୍ପର୍କ । ସେ ବନ୍ଧନରେ ରହିଛି ଦୃଢତା, ନିବିଡତା ।

ପାରାୟଣ ମନ ହୋଇଉଠିଲା ଅସ୍ଥିର । ସେ ଏ ଭୂଇଁରୁ ଉଚ୍ଛେଦ ହେବନାହିଁ । ସେ ଏଇଠି ରହିବ, ତାକୁ ଯେତେ ମୂଲ୍ୟ ଦେବାକୁ ପଡୁ ପଛେ ।

ସମସ୍ତଙ୍କ ମୁହଁକୁ ଚାହିଁଲା ସେ । ଭୟରେ, ଆଶଙ୍କାରେ ଛଟପଟ ହୋଇ ଯାଇଥିବା ମୁହଁ । ନିଜେ ନିଜକୁ କେଉଁଠି ହଜାଇ ଦେଇଥିବାର ମୁହଁ ।

ଏଇମାନଙ୍କୁ ସେ କେତେ ଦିନରୁ ଦେଖିଛି । କିଆଫୁଲ ତୋଳିବା ବେଳେ ସେମାନଙ୍କ ମଧୁର କଣ୍ଠର ସ୍ୱରରେ ସେ ନିଜକୁ ହଜାଇ ଦେଇଛି । ସେମାନେ ତ ତାର ଆଶା, ବିଶ୍ୱାସ ଓ ଆଶ୍ରୟ ।

କେମିତି ସେମାନେ ଏଠୁ ଚାଲିଯିବେ । ସେମାନଙ୍କର ବରଗଛ ଛାଇରଆଶ୍ରା ଲୋଡା ନାହିଁ । ସେମାନଙ୍କ ପାଇଁ ଏହି ନଡିଆ ଗଛ ବେଶ୍ ଭଲ । ଏଇ କିଆ ଫୁଲ ବେଶ୍ ଭଲ । ଏଇ ମଶାଣିରେ ସେମାନଙ୍କ ଚିତା ଜଳିବ ହୁତ୍ ହୁତ୍ ହୋଇ ।

ସେମାନେ ଏଇଠି ରହିବେ, ଏଇଠି ବଞ୍ଚିବେ ନିଜର ସ୍ୱାଭିମାନ ନେଇ । କାହା ହାତଟେକା ପାଣିକୁ ଚାହିଁବେ ନାହିଁ । କିନ୍ତୁ.... କିନ୍ତୁ ସରକାର ସାଙ୍ଗରେ ଲଢେଇ କରି କଣ ସଫଳ ହେବ ?

ପାରାୟଣ ଦମ୍ଭ ଧରିଲା । ସତ୍ୟ ପାଇଁ ଲଢେଇ କରିବାର ଦମ୍ଭ । ଧର୍ମର ପତାକାକୁ

ଟେକି ଧରିବାର ଦମ୍ଭ । ପ୍ରେମ, ପ୍ରୀତି ଓ ଭଲପାଇବାକୁ ବଞ୍ଚାଇ ରଖିବାର ଦମ୍ଭ ।

ସାବି ଚାହିଁଥିଲା ପାରାୟଣକୁ । କେତେ ମନର ଜୋର ଏଇ ମଣିଷର । କେତେ ଭଲ ପାଇବା ତା ମନ ଭିତରେ ଏ ଭୂଇଁ ପାଇଁ, ଏ ମଣିଷମାନଙ୍କ ପାଇଁ ।

ଆରମ୍ଭ ହେଲା ସେ ସଂଗ୍ରାମ । ମହାଭାରତ ଯୁଦ୍ଧ ସିନା ଅଠର ଦିନରେ ସରିଥିଲା କିନ୍ତୁ ଏ ଯୁଦ୍ଧ କେତେ ବର୍ଷରେ ସରିବ କିଏ ଜାଣେ ! ଏତେ ଧର୍ମ ଯୁଦ୍ଧ ନୁହେଁ । ଅନ୍ୟାୟ ବିରୁଦ୍ଧରେ ନ୍ୟାୟ ପାଇଁ ଯୁଦ୍ଧ ।

ଏ ଯୁଦ୍ଧ ରାଷ୍ଟ୍ର ଶକ୍ତି ବିରୁଦ୍ଧରେ, ମାନବବାଦର । ଏ ଯୁଦ୍ଧ ଅହଂ ବିରୁଦ୍ଧରେ ପ୍ରେମର । ଏ ଯୁଦ୍ଧ ସବଳର ଅତ୍ୟାଚାର ବିରୁଦ୍ଧରେ ଦୁର୍ବଳର ।

ଏଇ ଯୁଦ୍ଧ ଦିନେ ଏଇ ଭୂମିରେ ଆରମ୍ଭ ହୋଇଥିଲା । ପରାକ୍ରମଶାଳୀ ବ୍ରିଟିଶ ଶକ୍ତି ହାର ମାନିଥିଲା ଦୁର୍ବଳମାନଙ୍କ ଦ୍ୱାରା । ଦୁର୍ବଳର ଅସ୍ତ୍ର ଥିଲା ଅହିଂସା ଓ ପ୍ରେମ ।

ପାରାୟଣ ପୁଣି ଥରେ ସେଇ ଅସ୍ତ୍ରକୁ ପ୍ରୟୋଗ କରିବ । ପ୍ରୟୋଗ କରିବ ସେଇମାନଙ୍କ ବିରୁଦ୍ଧରେ ଯେଉଁମାନେ କ୍ଷମତାକୁ ଭୋଗ କରୁଛନ୍ତି । କ୍ଷମତା ଲାଳସାରେ ନିଜ ଭୂଇଁକୁ ବିକିଦେବାକୁ ପଛାଉ ନାହାନ୍ତି । ନିଜ ମାର କାନ୍ଦ ସେମାନଙ୍କର କାନକୁ ଶୁଭୁନାହିଁ । ମା ଆଖିର ଲୁହକୁ ସେମାନେ ଦେଖିପାରୁ ନାହାନ୍ତି ।

ପାରାୟଣ ଚାହିଁଲା ସବିତାକୁ । ଭାବୁଥିଲା ତାକୁ ପଚାରିବ ତାର ଏହି ଯୁଦ୍ଧରେ ସେ ତା ସହିତ ରହିବ କି ନାହିଁ ।

ପଚାରିବାର ଅବକାଶ ଦେଲା ନାହିଁ ସାବି । ସେତ ବୁଝିଛି ତା ମନର ମଣିଷଟିର ଭାବନାକୁ । ସେତ ଜାଣିଛି ଅନ୍ୟାୟ ବିରୁଦ୍ଧରେ ଜନ୍ମିଛି ସଂଗ୍ରାମ କରିବାକୁ ପାରାୟଣ । ସେ ଶାନ୍ତ, ଧୀର, ସ୍ଥିର କିନ୍ତୁ ସେ ମଧ୍ୟ ଏକ ପ୍ରକାଣ୍ଡ ଅଗ୍ନିପିଣ୍ଡ । ସେହି ଅଗ୍ନିପିଣ୍ଡର ଦହନ କରିବାର ଶକ୍ତି ରହିଛି ।

ସବିତା ତାକୁ ସେଦିନ କହିଥିଲା, ମୁଁ କଣ କେବଳ ତୁମର ସହଧର୍ମିଣୀ ! ମୁଁ ତୁମର ସହକର୍ମିଣୀ ଓ ସହଯାତ୍ରିଣୀ । ତୁମ ସହିତ ମୁଁ ଅଛି । ତୁମ ସଂଗ୍ରାମର ମୁଁ ହେଉଛି ଅସ୍ତ୍ର ।

ପାରାୟଣ ଆରମ୍ଭ କରିଥିଲା ତାର ଦୁର୍ବାର ଅଭିଯାନ । ଏ ଭୂଇଁରେ ଶାନ୍ତି ପାଇଁ, ସଂହତି ପାଇଁ, ସୁରକ୍ଷା ପାଇଁ ତାର ସଂଗ୍ରାମ ଦିନେ ନା ଦିନେ ଇତିହାସ ପୃଷ୍ଠାରେ ଲେଖାଯିବ । ସେହି ସଂଗ୍ରାମ ଆରମ୍ଭ ମାତ୍ରକେ ଡରି ଯାଇଥିଲା ରାଷ୍ଟ୍ରଶକ୍ତି । ଡରୁଆ, ସ୍ୱାର୍ଥାନ୍ୱେଷୀ ମଣିଷଗୁଡିଏ ତ ଜାବୋଡି ଧରିଛନ୍ତି କ୍ଷମତାକୁ ।

ସଂଗ୍ରାମର ଲେଲିହାନ ଶିଖା ବ୍ୟାପିଯାଇଥିଲା କମାଖଣ୍ଡିରୁ ସମଗ୍ର ଓଡିଶା ଭୂଇଁକୁ ।

ପାରାୟଣ ଜାଣିଥିଲା ଏ ସଂଗ୍ରାମରେ ବିଜୟ ଏତେ ସହଜ ନୁହେଁ । ଅର୍ଥବଳ, ବାହୁ ବଳ, ରାଷ୍ଟ୍ରବଳ ଆଗରେ ଅହିଂସା ବଳରେ ସଂଗ୍ରାମ ସମୟସାପେକ୍ଷ; ହୁଏତ ଆନ୍ଦୋଳନ ଭିନ୍ନ ମୋଡ ନେଇପାରେ । ଏହାର ଗତିପଥରେ ପରିବର୍ତ୍ତନ ଘଟିପାରେ । ନଦୀର ପ୍ରବହମାନ ଧାରା

କେତେବେଳେ କେଉଁ କୂଳ ଖାଇବ, କିଏ କହିପାରିବ ।

ତାବୋଲି ଆନ୍ଦୋଳନଠାରୁ ମୁହଁକୁ ମୋଡିନେବ ? ରାଷ୍ଟ୍ରଶକ୍ତି ଓ ଅର୍ଥଶକ୍ତିର ଅନ୍ୟାୟ ଓ ଅତ୍ୟାଚାରକୁ ମୁଣ୍ଡପୋତି ସହିଯିବ ? ନିଜ ଭୂଇଁର ମମତାଠାରୁ ବିଚ୍ଛିନ୍ନ ହୋଇ ବଞ୍ଚିପାରିବ ?

ପାରାୟଣ ଆରମ୍ଭ କରିଥିଲା ସଂଗ୍ରାମ । ସ୍ୱତଃପ୍ରବୃତ୍ତ ହୋଇ ଯୋଗ ଦେଇଥିଲେ ତାର ବନ୍ଧୁମାନେ, ସାଥୀମାନେ, ସହଯୋଗୀମାନେ । ନିଜ ଜୀବନ ପଛକେ ଦେବେ, ନିଜ ଭୂଇଁରୁ ଉଠିଯିବେ ନାହିଁ ।

ସେଇ ଯେ ଆରମ୍ଭ, ତାର ଶେଷ କେଉଁଠି ଦେଖିପାରୁ ନଥିଲା ସବିତା ।

ପାରାୟଣ ଜେଲଗଲା ଥରେ, ଦିଥର, ତିନିଥର । ବାରମ୍ବାର ତାକୁ ଆସି ବିଭିନ୍ନ ଦଫାରେ ବାନ୍ଧି ନେଇଗଲେ । ସାବି ଚାହେଁ ତାକୁ । ଆଖିରେ ଲୁହ ଢଳଢଳ ହୋଇଯାଏ । ଚାହିଁପାରେନା ତା ଆଖିକୁ । କାନିରେ ଲୁହକୁ ପୋଛେ । ଚାଲି ଯାଉଥିବା ପାରାୟଣର ଚେହେରାକୁ ଚାହେଁ ।

କଣ ଦୋଷ ତାର ? କାହିଁକି ତାକୁ ବାରମ୍ବାର ଧରି ନେଉଛନ୍ତି ? ଆନ୍ଦୋଳନ କରିବା ସତରେ କଣ ଏତେବଡ ଅପରାଧ ?

କିଏ ଦେବ ତା ପ୍ରଶ୍ନର ଉତ୍ତର ? କାହାକୁ ପଚାରିବ ସେ ?

ସାବି ଚାହିଁଦେଖେ କିଆ ଫୁଲ ଗଛକୁ । କେତେ ବଡ ବଡ ଫୁଲ ଫୁଟି ହସୁଛି । ନଡିଆ ଗଛରେ କେତେ ଫଳ । ସମୁଦ୍ରପବନରେ ଝୁଲୁଛି ନଡିଆ ବାହୁଙ୍ଗା ଓ କିଆପତ୍ର । ସବୁ ଯେମିତି ନିତିଦିନିଆ ଘଟଣା ।

କିନ୍ତୁ ନାହିଁ କେବଳ ପାରାୟଣ । ସେ ଜେଲର ଚାରିକାନ୍ଥର ଘର ଭିତରେ ବାନ୍ଧିହୋଇ ରହିଛି । ସାବି ପାଖରେ ନାହିଁ । ସାବି ହାତରନ୍ଧା ଖାଇବାକୁ ସେ ନାହିଁ ।

ସାବି ଆଉ ରାନ୍ଧିପାରୁନି । ଏକା ମାଇପି । ସାଙ୍ଗରେ ତାର ସାତବର୍ଷର ଗୋଟେ ପୁଅ ଓ ପାଞ୍ଚବର୍ଷର ଝିଅଟିଏ । କେତେବେଳେ କେମିତି ବା ବା ହୁଅନ୍ତି । ଅଝଟ ବି କରନ୍ତି । ଦିନେ ଦିନେ ସ୍କୁଲକୁ ନଯିବାକୁ ମା ସାଙ୍ଗରେ ଜିଦ୍‌କରି କିଛି ଖାଆନ୍ତି ନାହିଁ । ବାପ ପାଖକୁ ଯିବାକୁ ମା କୁ ବାରମ୍ବାର କୁହନ୍ତି ।

ସାବି ଜାଣେ ପିଲା ଦୁଇଟି ବାପପାଇଁ ଝୁରୁଛନ୍ତି । ଜନ୍ମ ହେବା ଦିନରୁ ତ ପାରାୟଣ ବାରମ୍ବାର ଜେଲକୁ ଯାଉଛି । ବାପ ସ୍ନେହ ଭଲ କରି ମିଳିନି ଏଯାଏ ସେମାନଙ୍କୁ । ଯେତେ ଯତ୍ନରେ ରଖିଲେ କଣ ହେବ, ବାପ ନ ରହୁଥିବାର ଦୁଃଖରେ ସେମାନେ ଦୁଃଖି ।

ଗାଁ ପିଲାଏ ସିନା ଥଟା ତାମସା କରୁନାହାନ୍ତି, ହେଲେ ଛୁଆମାନଙ୍କ ମନକୁ ମନ ଜଡସଡ ହୋଇଯାଉଛନ୍ତି । ଏ ଛୁଆମାନେ ତ ତାର ଜୀବନ । ଏହାରି ମୁହଁକୁ ଚାହିଁ ତ ସେ ପାରାୟଣର ଅଭାବକୁ ସାମୟିକ ଭୁଲିଯାଇ ପାରିଛି ।

ସେ ଜାଣିଛି ପାରାୟଣ ଯେଉଁ ସଂଗ୍ରାମରେ ନିଜ ଜୀବନକୁ ବାଜି ଲଗେଇ ଦେଇଛି, ସେ ସଂଗ୍ରାମର ବିଜୟ ଏତେ ସହଜସାଧ୍ୟ ନୁହେଁ । ସେ ନିଜେ ମଧ୍ୟ ଏଇ ସଂଗ୍ରାମରେ ଭାଗ

ନେଇଛି । ରାସ୍ତାରୋକୋ କରିଛି । ଏ ଭୂଇଁକୁ ଅନ୍ୟ ହାତରେ ସମର୍ପି ନଦେବା ପାଇଁ ଅଗଣିତ ଭଉଣୀମାନଙ୍କୁ ତ ସେ ଘରୁ ଗୋଡ କାଢି ନେଇଯିବାକୁ ପ୍ରେରଣା ଦେଇଛି । ତାର ଏ ସଂଗ୍ରାମରେ ମିଶିବା ପାରାୟଣ ମନରେ ସାମର୍ଥ୍ୟ ସୃଷ୍ଟି କରିବା ଓ ଅନ୍ୟ ଭଉଣୀମାନଙ୍କୁ ସେମାନଙ୍କର ନାର୍ଯ୍ୟ ଅଧିକାର ପ୍ରତି ସଚେତନ କରିବାପାଇଁ ଉଦ୍ଦିଷ୍ଟ ।

ସେ ନେତ୍ରୀ ନୁହେଁ । ତାର ନାରୀନେତ୍ରୀ ହେବାର ଇଚ୍ଛା ମଧ୍ୟ ନାହିଁ । ସେ ଚାହେଁ ପାରାୟଣ କୋଳରେ ନିଜକୁ ହଜାଇ ଦେବାକୁ । ପାରାୟଣ ତା କୋଳରେ ଦେଇଥିବା ସନ୍ତାନ ଦୁଇଟିକୁ ବଡକରି ଗଢିବାକୁ ।

ଛୁଆମାନେ ବା ବା ହେଲାବେଳେ ସେ କହିପାରେନା କିଛି । ତା ଆଖିରେ ଲୁହ ଜକେଇ ଆସେ । କୋଳେଇ ନିଏ ସେମାନଙ୍କୁ । ତାଙ୍କ ମୁହଁରେ ଚୋକଦେଇ କହିପକାଏ, "ତୁମେ କାହିଁକି ବ୍ୟସ୍ତ ହେଉଛ । ବା ତୁମର ଆସିବ ଆଉ ଅଳ୍ପ ଦିନ ଗଲେ । କିଆ ବୁଦାରୁ ସବୁଠାରୁ ବଡ ଫୁଲଟିକୁ ତୋଳି ତୁମକୁ ଦେବ । ନଡିଆ ଗଛରୁ ପଇଡ ତୋଳିବ । ଆମେ ବ୍ରହ୍ମପୁର ଠାକୁରାଣୀ ଯାତ ଦେଖିବାକୁ ଯିବା ।"

"ମାମୁଁଘର ଶ୍ରୀକାକୁଲମ୍‌କୁ ଯିବାନି ? ପ୍ରଶ୍ନ କରନ୍ତି ସେମାନେ ।"

"ହଁ, ହଁ, ମାଉସୀ ଓ ଅଜାଙ୍କୁ ଦେଖିବାକୁ ଯିବା ।" କାନ୍ଦ କାନ୍ଦ ହୋଇଯାଆନ୍ତି ପିଲାଦୁଇଟି । ତା ମୁହଁକୁ ବଲ ବଲ କରି ଚାହାଁନ୍ତି । ସକାକୁଆ ସୁରୁଜ ପୂର୍ବ ଦିଗରେ ଉଠିବା ପରି, ସେମାନଙ୍କ ମୁହଁରେ ହସ ଫୁଟିଉଠେ ।

ଅବିକଳ ପାରାୟଣ ପରି । ତାରି ମୁହଁ, ତାରି ଆଖି, ତାରି ପରି ଚଞ୍ଚଳ । ତା ଆଖିରେ ଭୟ ନାହିଁ ।

କଣ କହିବ ପିଲାଙ୍କୁ ସେ । କେତେ ଆଉ ବୁଝାଇବ ତାଙ୍କୁ । ସେ ଦେଖିନି ପରାୟଣକୁ । ଜେଲ୍‌କୁ ଯାଇ ସାକ୍ଷାତ କରିବାକୁ ତା ମନ କେବେ କହେନି ।

ସେ ଭାବେ ସେ ଫେରିଆସିବ । ଟଙ୍କାବାଲାତ ବାରମ୍ବାର କହିଲେଣି ସେ ସେଠାରେ ଆଉ ଟଙ୍କା ଖଟାଇବେନି । ସରକାର ତ ଚୁପ୍ । ଡେରି କାହିଁକି ହେବ, ତା ଆସିବାରେ । ସେ ତ ଦେଶଦ୍ରୋହୀ ନୁହେଁ । ସେ ତ ଷଡଯନ୍ତ୍ର କରିନି ରାଷ୍ଟ୍ର ବିରୁଦ୍ଧରେ । ସେ କେବଳ ଭଲ ପାଇଚି ଏ ଭୂଇଁକୁ, ତାର ନଡିଆ ଓ କିଆ ଗଛକୁ । ତାର ବାଲି, ମାଟି, ପାଣି ଓ ପବନକୁ ।

ସେ ନିଶ୍ଚେ ଆସିବ । ଭୋଟ ଦିନ ଆସିଲାଣି । ସେ ଭୋଟ ଦେବ । ସେ ତାର ପ୍ରତିନିଧି ନିର୍ବାଚନ କରିବ । ସେ ତାକୁ କହିବ, "ସାବିଲୋ ! ଭୋଟ ନଦେଲେ ଆମେ ଗଣତନ୍ତ୍ର ରାଷ୍ଟ୍ରକୁ କେମିତି ସୁରକ୍ଷା କରିବା ! ଭୋଟ ଦେବା ଆମର ନାଗରିକ ଅଧିକାର । ଆମେ ଯଦି ଭୋଟ ନଦେବା ଅନ୍ୟମାନେ କଣ କହିବେ ? କଣ ଭାବିବେ ଆମ ସମ୍ପର୍କରେ ?"

ସବିତା ଭୋଟ ଦିଏ ତା କଥାରେ । କେବେହେଲେ ତା କଥା ଅମାନ୍ୟ କରେନି । ସେ ବୁଝିଯାଇଛି, ଭୋଟ ଦେବାର ଗୁରୁତ୍ୱ । ସରକାର ତାକୁ ହଇରାଣ କରୁଛି, ତା ସ୍ୱାମୀକୁ ନେଇ

ଜେଲ୍‌ରେ ନଥିଲେ ତଥାପି ସେ ନିଜ ଭୋଟଟି ଦେବ । ନିଜ ଭୋଟଟି ଦେଇଥିଲେ ସିନା କହିପାରିବ ସରକାରଙ୍କ କାମ ଠିକ୍ କି ଭୁଲ୍ ।

ଦିନ ଗଡିଗଲାଣି । ଆକାଶରେ ସୂର୍ଯ୍ୟ ନଇଁପଡିଲେଣି ପଶ୍ଚିମକୁ । ତୁଳସୀ ଚଉରା ମୂଳେ ସୂର୍ଯ୍ୟଦେବ । ଏଇ ସନ୍ଧ୍ୟାବେଳେ ସେ ଫେରନ୍ତି ।

ଆଜି ସେ ଫେରିବେ । ଖବରକାଗଜରେ ବାହାରିଥିଲା ସରକାର ତାଙ୍କ ଫେରିବାର ବାଟ ପରିଷ୍କାର କରିଦେଲେଣି । ସେ ମା ବୃନ୍ଦାବତୀଙ୍କୁ ପ୍ରଣତି ବାଢୁଛି ଦୀର୍ଘ ତିନିବର୍ଷ ହେଲା । ମାଗୋ ! ତୋ ଭୂଇଁର ପୁଅକୁ ଚଞ୍ଚଳ ଫେରେଇ ଆଣ । ଦୀର୍ଘ ତିନିବର୍ଷ ଗଲାଣି । ଆଉ କେତେଦିନ ସହିବ ଏ ଭୂଇଁ ତାର ଏଠି ନରହିବାର ଦୁଃଖ ।

ହଁ, ତା ଲୋକଟା ଫେରିଆସିବ । ଏଇ ସନ୍ଧ୍ୟାବେଳରେ । ଏଇଟା ତ ତାର ଫେରିବାର ବେଳ ।

ଚଉରା ମୂଳରେ ଜଳୁଥିବା ଦୀପ । ପଣତ କାନିକୁ ବେକରେ ପକାଇ ହାତଯୋଡି ବସିଥିଲା ସବିତା ରେଣ୍ଟି ।

ତା ଆଗରେ ଲୟା ଗୋଡି ରାସ୍ତାଟି ଲମ୍ବିଯାଇ ମିଶିଯାଇଥିଲା ଜାତୀୟ ରାଜରାସ୍ତା ସହିତ । ପାଚାୟଣ ଏଇ ରାସ୍ତାଦେଇ ଫେରିବତ..... ।

❋ ❋

# ଶ୍ରୀମଦ୍ ଭଗବଦ୍ ଗୀତା, ଭୋଳାନାଥବାବୁ ଓ ନରିଆ ପାନଦୋକାନୀ

ଭୋଳାନାଥ ବାବୁ ଫରେଷ୍ଟପାର୍କଠାରୁ ବୁଲି ବାପୁଜୀନଗର ଶେଷ ଓ ରାଜମହଲ ଛକ ଆରମ୍ଭ ଚୌରାସ୍ତାରେ ପହଞ୍ଚି ନରିଆ ପାନଦୋକାନ ଆଗରେ ପଡିଥିବା ଚୌକିଟିରେ ଥମ୍‌କରି ବସି ପଡନ୍ତି । ଏହା ତାଙ୍କର ନିତି ଦିନିଆ ଅଭ୍ୟାସ । ଗତ ବର୍ଷେ ହେଲା ଏଥିରେ ଦିନେ ହେଳା କରି ନାହାନ୍ତି । ଭୋର ପାଞ୍ଚଟା ବେଳୁ ମର୍ଣ୍ଣି ଓ୍ୱାକ୍‌ରେ ହାତରେ ବାଡିଧରି ଘରୁ ବାହାରିବା ବେଳେ ରାସ୍ତାରେ ଙ୍କାଁ ଭାଁ ଗୋଟେ ଅଧେ ଲୋକ ଆଖିରେ ପଡନ୍ତି ।

ବୁଲାକୁକୁର ଗୁଡାଙ୍କର ଦୌଡାଦୌଡି ଓ କାମୁଡାକାମୁଡି, ଷଣ୍ଢ ଦୁଇ ଚାରୋଟି ରାସ୍ତାରେ ଶୋଇଥିବା ଯେମିତି ସବୁ ଶୂନ୍‌ଶାନ୍ ଦେଖା ଯାଉଥିଲେ ବି ସକାଳର ସତେଜ ପ୍ରକୃତି ଜୀବନ୍ତ ଓ ରୂପବନ୍ତ ଅନୁଭୂତ ହୁଏ । ଛାତ୍ର ଜୀବନରେ ତାଙ୍କର ପ୍ରିୟ କବି ଗଙ୍ଗାଧର ଓ ଓ୍ୱାର୍ଡସ୍‌ଓ୍ୱାର୍ଥ ବାରମ୍ବାର ମନେ ପଡିଯାନ୍ତି ।

ଭୋଳାନାଥବାବୁ ରାଜଧାନୀରେ କେବଳ ନୁହେଁ, ସମଗ୍ର ଓଡିଶାରେ ବେଶ୍ ଜଣାଶୁଣା । ଦୁଇ ଦୁଇଥର ଏମ୍.ଏଲ୍.ଏ ଓ ଏମ୍.ପି. ହେବାପରେ ଗତ ନିର୍ବାଚନରେ ହାରିଯାଇ ଏବେ ବାନପ୍ରସ୍ଥ ନେବାର ଇଚ୍ଛା କରୁଥିଲେ ହେଁ, ଏଯାବତ୍ କୁର୍ସିର ମୋହଭଙ୍ଗ ହୋଇ ନାହିଁ । କେମିତି ବା ହୁଅନ୍ତା ?

ସକାଳୁ ସନ୍ଧ୍ୟା ଯାଏ ଲୋକମାନଙ୍କର ଥାଟ, ନମସ୍କାର ଓ ଭେଟିରେ ଜୀବନର ସାୟାହ୍ନ ପର୍ଯ୍ୟନ୍ତ ବିତିଯିବାବେଳେ ହଠାତ୍ ଚେୟାରଟା ଦୁଧଖିଆ ଛୁଆର କରାମତିରେ ଚାଲିଯିବ, ଏହା ଥିଲା ତାଙ୍କ କଳ୍ପନାର ବାହାରେ । ରାଜନୀତି ଖେଳ ପଡିଆରେ କେତେ ରଥୀ ମହାରଥୀଙ୍କୁ ଚିତ୍‌କରି ପକାଇଦେଇ ବାହା ବା ନେବା ବେଳେ ସାମାନ୍ୟ ଟୋକାଟିଏ ଖେଳ ଜିତିବା ପରି ସେ ଯେ ବାଜି ହାରିଯିବେ, ଏହା କେଉଁ ତତ୍ତ୍ୱରେ ଲେଖା ହୋଇଛି, ତାହା ଏବେ ତାଙ୍କ ଗବେଷଣାର ବିଷୟ ।

ରାଜମହଲ ଛକରୁ ଫରେଷ୍ଟ ପାର୍କ ଓ ଫରେଷ୍ଟ ପାର୍କରୁ ରାଜମହଲ ଛକ । ଏଇତକ ବାଟକୁ ଘଣ୍ଟାକରେ ଟପି ଆସନ୍ତି ସେ । ପହଞ୍ଚି ଯାଆନ୍ତି ତାଙ୍କର ପୁରୁଣା ପାନଦୋକାନୀ ନରିଆ ପାଖରେ । କ୍ୟାବିନ୍ ପକେଇ ଦୀର୍ଘ କେତେବର୍ଷ ଧରି ଗୋଟିଏ କୋଣରେ ଗରାଖମାନଙ୍କର ମନଲାଖି ବାବା ଜର୍ଦ୍ଦାଦିଆ ପାନ ଓ ଚା ଦେବାରେ ସେ ଓସ୍ତାଦ । ନାଁ କମେଇଛି । ବୟସ ପଚାଶ ପାଖାପାଖି । ଆଗଦାନ୍ତ ଚାରୋଟି ଝଡି ପଡିଲାଣି ଅବେଳରେ ନଡିଆ ଗଛରୁ କଞ୍ଚା ନଡିଆ ଖସି ପଡିବା ପରି ।

ଭୋଳାନାଥବାବୁଙ୍କର ନରିଆ ପାନ ଦୋକାନୀର ପାନ ବେଶ୍ ପସନ୍ଦ । ଗରମ ଗରମ ଚା କପେ ଓ ଦିନ ତମାମ ପାଇଁ କୋଡିଏ/ପଚିଶ ପାନଧରି ବାବୁ ନରିହାତକୁ ଟଙ୍କା କେଇଟା ବଢେଇ ଦେଇ ଚାଲିଗଲାବେଳେ ଗବ ଗଛ ତଳକୁ ନଇଁଯିବା ପରି ସେ ନଇଁପଡେ । କୃତଜ୍ଞତାରେ ଓଠରୁ ହସ କେରେ ଝରି ପଡେ ପାଖରେ ଠିଆ ହୋଇଥିବା ଗଙ୍ଗଶିଉଳୀ ଗଛରୁ ଫୁଲ ଝରି ପଡିବା ପରି ।

ନରିଆ ପାନ ଦୋକାନୀର ଭଲ ନାଆଁ ନରୋତ୍ତମ ଦାସ । କେହି ତାହାର ଜାତି ଜାଣନ୍ତି ନାହିଁ । କିନ୍ତୁ ବେକରେ ରୁଦ୍ରାକ୍ଷ ମାଳା ଓ ନଅଖିଅର ପଇତା ମହାଦେବଙ୍କ ଦେହ ମଣ୍ଡନ କରିବା ପରି ତା ଛାତିର ଶୋଭାବର୍ଦ୍ଧନ କରୁଥାଏ । ରାଜଧାନୀରେ ପାଖ ପଡୋଶୀଙ୍କୁ ନ ଜାଣିବା ପରି ନରିଆ ପାନ ଦୋକାନୀର ଜାତି, କୁଳ ଓ ବଂଶ ସମ୍ପର୍କରେ କେହି ଅବଗତ ହେବାର ଉତ୍କଣ୍ଠା କେବେ ବି ପ୍ରକାଶ କରି ନାହାନ୍ତି କିମ୍ବା ସେ ନିଜେ କାହାକୁ ଅଯାଚିତ ହୋଇ ନିଜ ସଂପର୍କରେ କହିଥିବାର ଜଣା ନାହିଁ ।

ଆଜିକାଲିର ଟୋକାମାନେ ତାକୁ ନରିଆଭାଇ, ନରିଆ ମଉସା, ଓ ଭାଇନା ଇତ୍ୟାଦି ଉପାଧିରେ ଭୂଷିତ କରି ଦେଇଛନ୍ତି । ଦିନତମାମ ପାନ ଓ ଚା । ଅଳ୍ପ ଦିନ ହେବ, ତାକୁ ସାହାଯ୍ୟ କରିବାକୁ ଟୋକାଟିଏ ଅଛି । ଯେତେ ବାହୁଙ୍ଗା ଦାଦା ହେଲେ ବି ନରିଆ ପାନ ଦୋକାନୀର ପଇସା ନିଶ୍ଚେ ବାକ୍ସରେ ପଶିବ । ବସ୍ତି ଦାଦା, ରାଜନୀତି ଦାଦା ସମସ୍ତେ ତାର ହସରେ ମୋହିତ ହୋଇ କିମ୍ବା ତା କ୍ୟାବିନରେ ଟଙ୍ଗା ଥୋଇ ଧୂପଦୀପ ଚନ୍ଦନରେ ନିଜକୁ ଜାହିର କରୁଥିବା ଅର୍ଜୁନ ରଥର ସାରଥି କୃଷ୍ଣଙ୍କୁ ଚାହିଁ ଭୟରେ ନିଜ ନିଜ ପାଉଣା ଦେବାକୁ ଭୁଲନ୍ତି ନାହିଁ । ଶ୍ରୀମଦ୍ ଭଗବଦ୍ ଗୀତାର ମଲାଟ ଉପରେ ଧନୁଶର ଥୋଇଦେଇ କୃଷ୍ଣଙ୍କ ପାଦତଳେ ହାତଯୋଡି ନେଉଳିଆଳି ହେଉଥିବା ଅର୍ଜୁନଙ୍କ ପରି ଆମର ଆଧୁନିକ ଅର୍ଜୁନମାନେ ନରିଆ ପାନଦୋକାନରେ ଠିକ୍

ସେହିପରି ଭୂମିକା ନିଭେଇଥିବାର ଦେଖାଯାଏ ।

ନରିଆ ଯେମିତି ନିର୍ବିକାର ପୁରୁଷଟିଏ । କୃଷ୍ଣଙ୍କ ପରି ରଥ ଉପରେ ବସି ଅଶ୍ୱମାନଙ୍କୁ ଚାଳନା କରିବା ପରି ନିଜ ଦୋକାନରେ ପକାଇଥିବା ଉଚ୍ଚ ଷ୍ଟୁଲ ଉପରେ ବସି ଦୁଇ ହାତକୁ ଖୁବ୍ ଜୋରରେ କାମରେ ଲଗାଇ ଦେଇଥାଏ । ଚା ଓ ପାନ ଦେବାରେ ଫୁରସତ୍ ମିଳେନି ସତ କିନ୍ତୁ ଘୁଣୁଘୁଣୁ ହୋଇ କଣ ଶ୍ଳୋକ ବୋଲି ଚାଲିଥାଏ । ଗରାଖମାନଙ୍କର ନଜର ନଥାଏ ସେଆଡକୁ ।

ଭୋଳାନାଥ ବାବୁ ସେଦିନ ମର୍ଣ୍ଣିଂୱାକ୍‌ରୁ ଫେରି ନରିଆ ପାନଦୋକାନରେ ପହଞ୍ଚି ଯାଇଥିଲେ । ବାବୁଙ୍କୁ ଦେଖି, ଆଜ୍ଞା ବସନ୍ତୁ ! ମୁଁ ଟିକିଏ ମୋ ପୂଜା କାମଟି ସାରିଦିଏ ।

ଆଜ୍ଞା, ବୁଝିଲେ ନା, ଶ୍ରୀକୃଷ୍ଣ କହିଥିଲେ, ସର୍ବଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ, ଅହଂତ୍ୱା ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚ ।

ସବୁଧର୍ମ ତ୍ୟାଗ କରି ମୋର ଯେ ଶରଣ ନେବ, ମୁଁ ତାକୁ ସବୁ ପାପରୁ ମୋକ୍ଷ କରିବି । କେଡେ ଗୁରୁତ୍ୱପୂର୍ଣ୍ଣ କଥା ଦେଖନ୍ତୁ । କିଏ ଆଜ୍ଞା ପାପ କରୁନି । କହୁ ନାହାନ୍ତି ? ରାଜନୀତିବାଲାଏ - ବେଶି ପାପ । ଆଉ ଧରା ସହିବ ନାହିଁ । ଖାଲି ଦୁର୍ନିତୀ । ଖାଲି ଟଙ୍କା ଦିଅ ।

କିହୋ, ଏତେ ଟଙ୍କା ଆସିବ କେଉଁଠୁ । ଚାକିରି, ବଦଳିରେ ଟଙ୍କା ଦେବାତ ନିତିଦିନିଆ ବ୍ୟାପାରରେ ପରିଣତ ହେଲାଣି । ଏଇ ମ୍ୟୁନିସିପାଲିଟି ବାଲାଙ୍କୁ ଦେଖନ୍ତୁ । ସବୁଦିନେ ଚାନ୍ଦା ।

ହାତରେ ଛୋଟ ଡାଳ । ଫୁଲ ମେଞ୍ଚେ । ଚନ୍ଦନ ଟିକିଏ ଘୋରି ମଥାରେ ଲଗାଇ ଦେବା ପରେ ତୁଳସୀ ଦ୍ୱାରା ଫଟୋରେ ପାଣି ଛିଞ୍ଚା ହେଲା । ଫୁଲକୁ ସଜେଇ ଦେଲା ଧୀରେ ଧୀରେ । ଦୀପ ପ୍ରଜ୍ଜ୍ୱଳିତ କରି ଧୂପ ଲଗାଇ ଆଳତି କଲା । କଦଳୀରୁ ଚୋପା ବାହାର କରି ସମର୍ପଣ କରି ନମସ୍କାର କଲା ।

ମନ୍ତ୍ରମାନ ଏସବୁ କାମଭିତରେ ତା ପାଟିରୁ ଖୁବ୍ ଜୋରରେ ଅନର୍ଗଳ ବାହାରି ଚାଲିଥାଏ । ଶ୍ରୀମଦ୍ ଭଗବଦ୍ ଗୀତାର ଶ୍ଳୋକଗୁଡିକ ଯାହା ଶ୍ରୀକୃଷ୍ଣ ଦିନେ ଅର୍ଜୁନଙ୍କୁ କହି ବୁଝାଇଥିଲେ । କୃଷ୍ଣଙ୍କର ସେହି ଶ୍ଳୋକଗୁଡିକ ମନେ ଥିଲା କି ନାହିଁ ଜଣା ନାହିଁ, ସେ ପୋଥି ବା ବହି ଦେଖି ହୁଏତ ଅର୍ଜୁନଙ୍କୁ କହିଥିବେ କିନ୍ତୁ ନରିଆବାଇନା ମନ୍ତ୍ର ଉଚ୍ଚାରଣ କରିବା ବେଳେ, ମନ୍ତ୍ରଗୁଡିକ ନଈରେ ବହିଯାଉଥିବା ପାଣି ପରି ବହି ଚାଲିଥିଲା ।

ଭୋଳାନାଥ ବାବୁ ନରିଆ ମୁହଁକୁ ଆବା କାବା ହୋଇ ଚାହିଁରହି, ଏ ସବୁ ସେ କେମିତି ଜାଣିଲା, ବୋଲି ମନେ ମନେ ଭାବୁଥିଲେ । କେବଳ ସେତିକି ତାଙ୍କ ଭାବନାରେ ନଥିଲା । ସେ ନିଜର ଛାତ୍ର ଜୀବନ ପରଠାରୁ କିପରି ରାଜନୀତିରେ ପ୍ରବେଶ କରିଥିଲେ ଓ ତତ୍ତ୍ୱ ନଦୀମାନଙ୍କରେ ବୁଡ ପକାଇ ଆଜି ଜୀବନର ସାୟାହ୍ନରେ ପହଞ୍ଚି ସବୁ ବୁଝିଥିବା କଥାମାନ ଓଲଟପାଲଟ ହୋଇ ଯାଉଥିବାରୁ ଚିନ୍ତିତ ଥିଲେ, ତାହା ପ୍ରଭାତର ସ୍ନିଗ୍ଧ ଶୀତଳ ପରିବେଶରେ ରୋମନ୍ଥନ କରୁଥିଲେ । ନରିଆ ଆଡକୁ ଚାହିଁବାବେଳେ ତାର ଏକାଗ୍ର ଚିତ୍ତରେ ପୂଜା କରିବା ତାଙ୍କ ମନକୁ ବେଶ ଛୁଇଁଥିଲା । ଭାରତର ଲୋକମାନେ ଧର୍ମକୁ ନିଜ ଜୀବନ ସହିତ ଯୋଡି ଦେଇଥିବା ହେତୁ କଣ ଧର୍ମ ଜୀବନ

ବ୍ୟତୀତ ସମାଜ ପୁଷ୍ଟ ହେବନି ବୋଲି କେତେକ ବିଚାର କରି ଏହାକୁ ଧର୍ମାନ୍ଧତାର ରୂପଦେଇ କ୍ଷମତା ହାସଲ କରିବାର ମାଧ୍ୟମ କରିଛନ୍ତି କି ବୋଲି ନିଜକୁ ପ୍ରଶ୍ନ କଲେ ।

ବୁଦ୍ଧିଜୀବୀ ଲୋକ ତ । ବିଚାର ଓ ବୁଦ୍ଧି ପ୍ରୟୋଗ ନକରି ଖାଲି ଖାଲି କେମିତି ଗ୍ରହଣ କରିଯିବେ ଧର୍ମକୁ, ଯେଉଁଥିପାଇଁ ସେ ଜୀବନ ସାରା ସଂଗ୍ରାମ କରି ଆସିଛନ୍ତି । ବର୍ତ୍ତମାନ ତାଙ୍କ ହାତରେ ସେମିତି କିଛି ବିଶେଷ କାମ ନାହିଁ । କୁର୍ସି ନାହିଁ ତ ଲୋକେ କାହିଁକି ଆସିବେ । ଏ ବିଷୟରେ ନୂଆ କିଛି ତଥ୍ୟ ବାହାର କରାଯାଇପାରେ, ହୁଏତ ତାଙ୍କର ଏହି ତଥ୍ୟ ନିଉଟନଙ୍କ ଉଦ୍ଭାବନଠାରୁ ହେବ ଅଧିକ ଚମତ୍କପ୍ରଦ ।

ନରିଆ ଗରମ ଗରମ ଚା ଗ୍ଲାସଟିକୁ ଭୋଳାନାଥବାବୁଙ୍କ ହାତକୁ ବଢାଇ ଦେଇ କହିଲା, ଆଜ୍ଞା, ଗରମ ଚା କପେ ସକାଳୁ ପେଟରେ ପଡିଗଲେ, ଦିନ ତମାମ ମନଟା ଫୂର୍ତ୍ତିଲାଗେ । ଏଇ ଦେଖୁନାହାନ୍ତି ମୁଁ ନିତ୍ୟକର୍ମ ସାରି ଗୀତାକୁ ଅଧ୍ୟାୟେ ପଢିଦେଲେ ମନ ଖୁସ । ଚିନ୍ତା କିଛି ମନକୁ ଛୁଏଁନା ।

ଏତକ କହି ନରିଆ ଚା ଗ୍ଲାସ ଧରି ବାମ ହାତରେ ପିଇବା ସହିତ ଭୋଳାନାଥବାବୁଙ୍କ ପାଇଁ ଜର୍ଦାଦିଆ ପାନ ଭାଙ୍ଗିବାକୁ ପାନରେ ଚୂନ ଲଗାଇବାକୁ ଲାଗିଲା ।

ଭୋଳାନାଥବାବୁ ନରିଆ ଦୋକାନୀ ସହିତ ତେରବର୍ଷର ଚିହ୍ନା ପରିଚୟ । ପରିଚୟ ବୋଇଲେ ଏଇ ଚା ଓ ପାନଦେବା । ସାଧାରଣ ମଣିଷ ଭିତରେ ଥିବା ଗୁଣ ପ୍ରତି କେବେ ସେ ଆକୃଷ୍ଟ ହେବ ତ ଦୂରର କଥା, ସଚେତନ ମଧ୍ୟ ହୋଇ ନାହାନ୍ତି । ହେବାକୁ ବେଳ ଅବଶ୍ୟ ତାଙ୍କୁ ମିଳିନି ।

ଛାତ୍ର ଜୀବନରୁ ସ୍ୱାଧୀନତା ଆନ୍ଦୋଳନ । ଜେଲ ଜୀବନ... ଆତ୍ମଗୋପନ...ସାମାଜିକ ନ୍ୟାୟ ପାଇଁ ରାଜନୈତିକ ତତ୍ତ୍ୱ ପ୍ରତି ଆଗ୍ରହ... ଶ୍ରେଣୀ ସଂଗ୍ରାମ ଦ୍ୱାରା ହିଁ କେବଳ ସାମାଜିକ ନ୍ୟାୟ ପ୍ରତିଷ୍ଠା ହେବ ଏଇ ସଂକଳ୍ପରେ ବ୍ରତୀ ।

ସେଇଠୁ ଆସେମ୍ବ୍ଲି ଓ ପାର୍ଲାମେଣ୍ଟ । ଗଣତନ୍ତ୍ରରେ କ୍ଷମତା ଏଇ ବାଟେ ହାସଲ କରିବା ପାଇଁ ଚେଷ୍ଟା ଓ ନିର୍ବାଚନ ରଣାଙ୍ଗନରେ ବାରମ୍ବାର ଲମ୍ଫ ପ୍ରଦାନ ।

କେବେ ସମୟ ମିଳିଲା ଯେ ଜନ ଚରିତ୍ରର ପ୍ରକୃତ ରୂପରେ ଅବଗାହନ କରିବେ । ହଠାତ୍ ନରିଆ ପାନ ଦୋକାନୀ ଭିତରେ ଭାରତର କୋଟି କୋଟି ଲୋକଙ୍କର ଅନ୍ୟ ଏକ ରୂପର ପୃଷ୍ଠା ଓଲଟି ପଡିଲା ।

ସେଇ ରୂପକୁ ନିରିଖେଇ, ନିଠେଇ ଚାହୁଁଥିଲେ ଭୋଳାନାଥ ବାବୁ । ଯେମିତି ସୁନାରୀ ସୁନାକୁ ଓଲଟପାଲଟ କରି ଦେଖେ । ମନକୁ ନ ପାଇଲେ, ନିଆଁରେ ପୋଡିଦିଏ ତାର ଚହଟ ଚିକ୍କଣ ରୂପକୁ ଦେଖିବାକୁ ।

ହଇଓ ନରି ! ତୁମେ ଯେଉଁ ଶ୍ଳୋକ ବୋଲିଲ ଓ ଫୁଲରେ ମହୁମାଛି ବସି ଗୁଣୁଗୁଣୁ ହେବା ପରି ଗୁଣୁଗୁଣୁ ହେଉଛ, ତାର ଅର୍ଥ କିଛି ବୁଝିଛ ?

ଆଜ୍ଞା କୋଉ କଥା କହୁଛନ୍ତି ଆପଣ । ଗୀତା ବିଷୟରେ ତ । ମୋର ଆଜ୍ଞା ମୂଳରୁ ଶେଷଯାଏ କଣ୍ଠରେ ବିରାଜମାନ । ପିଲାଦିନରୁ ଅଭ୍ୟାସ । ବାପା କହୁଥିଲେ ସବୁଦିନେ ଗୀତା ପାଠ ଅଭ୍ୟାସ କଲେ ସଫଳତା ମିଳେ । ହଁ, ଏ ଯୋଗ । ଯୋଗଃ କର୍ମସୁ କୌଶଳମ୍ ।

ଭୋଳାନାଥବାବୁ ଚମକି ପଡିଲେ ନରିଆ ମୁହଁରୁ ଗୁଢତତ୍ତ୍ୱ ଶୁଣି । ଆଗ୍ରହ ବଢିବାକୁ ଆରମ୍ଭ କଲା ।

ସବୁ ଗରାଖଙ୍କ ମନକୁ ନିଜ ନିକିତିରେ ତଉଲିଥିବା ନରିଆ ଭୋଳାନାଥବାବୁଙ୍କ ମନକଥାକୁ ଠଉରାଇ ପାରି, ଭାଙ୍ଗୁଥିବା ପାନରୁ ଖଣ୍ଡେ ବଢାଇ ଦେଇ, ନିଜର ପାରଗ ପଣିଆକୁ ଦେଖେଇବା ପାଇଁ କହିଲା, ଆଜ୍ଞା ପ୍ରତ୍ୟେକ ଧର୍ମ ପାଇଁ ନୀତି; ଶାସ୍ତ୍ର ଦରକାର ।

ସନାତନ ହିନ୍ଦୁଧର୍ମ ଗୀତା ଶାସ୍ତ୍ର ଉପରେ ଆଧାରିତ ହୋଇଥିବାରୁ ଏହାର ମୌଳିକ ସ୍ୱରୂପରେ ବିଚ୍ୟୁତ ହୋଇନି ।

ମଣିଷ ଜୀବନରେ କେତେ ସମସ୍ୟା । ଏଇ ସମସ୍ୟା ବହୁ, ଜୀବନରେ ଆଶା ଓ ନିରାଶା ରହିବା ସ୍ୱାଭାବିକ । ନିରାଶା ରହିଲେ ଏଇ ସଂସାର ରୂପକ ବୁଢିଆଣୀ ଜାଲକୁ ଛିଣ୍ଡେଇବ କେମିତି । ଏଥିପାଇଁ ଦରକାର ଦୃଢ ମନୋବଳ ଓ ବୀରତ୍ୱ ।

ଗୀତା ସେଇ ବୀରତ୍ୱର କଥା କହେ, ଦୃଢ ମନୋବଳ ଦିଏ ।

ପାନଛେପ ଢୋକି ନରିଆ ଆଉ ଟା ଗ୍ଲାସେ ବଢାଇଦେଲା ଭୋଳାନାଥବାବୁଙ୍କ ହାତକୁ । ମର୍ଣ୍ଣି ଓ୍ୱାକ୍‌ରୁ ଫେରି ଗରାଖ କ୍ରମଶଃ ଭିଡ ଲଗେଇଲେଣି ।

ନରିଆ କିନ୍ତୁ ଗପି ଚାଲିଛି: ଯେମିତି ତା ନିକଟରେ ଦଣ୍ଡାୟମାନ ଯୁଦ୍ଧକ୍ଷେତ୍ରର ଅର୍ଜୁନ ।

ହଁ କଣ କହୁଥିଲି କି, ଏଇ ଯେଉଁ ଶରୀର, ହଁ ଆମ ଦେହ ଏଇ ତ କୁରୁକ୍ଷେତ୍ର । ଏଇଟି ହେଉଛି ଆମର ଯୁଦ୍ଧକ୍ଷେତ୍ର । ଆମର ଯେତେକ କାମ, ସବୁ ଏଇ ଦେହ ପାଇଁ ନୁହେଁ କି ? ଏଇ ଦେଖୁନାହାନ୍ତି ଏଇ ମଣିଷ ଡକାୟତ ହେଉଛି, ଏ ପୁଣି ହେଉଛି ସାଧୁ । ଆମ ଭିତରେ ଭଲ ଓ ମନ୍ଦ ଗୁଣ ରହିଛି । ତାଆର ଚାଲିଛି ସଂଘର୍ଷ ।

ଗୀତାରେ ଏଇ ବାଣୀସବୁ ରହିଛି । କଣ ଆଉ ଆପଣଙ୍କୁ କହିବି । ଛୋଟ ମୁହଁରେ ବଡ କଥା । ପିଲାଦିନରୁ ନିତି ଅଭ୍ୟାସ କରି ପଢୁଛି ଓ ତାକୁ କେମିତି କାମରେ ଲଗାଇ ପାରିବି, ତାରି ପରୀକ୍ଷା କରୁଛି ।

ଆପଣ କେବେ ଗୀତା ଭଲ କରି ପଢିଛନ୍ତି ?

ନରିଆ ପାନଦୋକାନୀର ପ୍ରଶ୍ନ । ଏ ପର୍ଯ୍ୟନ୍ତ ତାଙ୍କୁ ପାଠ ବିଷୟରେ କେହି ପ୍ରଶ୍ନ କରି ନାହାନ୍ତି । ସେ ଆଜି ଦେଶ ବିଦେଶରେ, ବିଭିନ୍ନ ସଭା ସମିତିରେ, ଆଲୋଚନାଚକ୍ରରେ ଅନେକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । ତାର ଉତ୍ତର ମଧ୍ୟ ଦେଇଛନ୍ତି । ସାମାନ୍ୟ ପାନଦୋକାନୀର ବହପ କମ୍ ନୁହେଁ । ସେ ପୁଣି କରୁଛି ପ୍ରଶ୍ନ । କ୍ଷମତା କୁର୍ସିରୁ ଓହରିଗଲେ କଣ ଲୋକେ ଏଇମିତି ପ୍ରଶ୍ନ କରନ୍ତି କି ? ନା, ନରିଆ ସେମିତି ନୁହେଁ । ସେ ପାନଦୋକାନୀ ହେଲେ କଣ ହେଲା, ସେ

ପଣ୍ଡିତ । ଭାରତୀୟ ଧର୍ମ ଦର୍ଶନରେ ଅଗାଧ ଜ୍ଞାନ ରଖିଥିବା ସାଧାରଣ ମଣିଷଟିଏ । ଚୁପ୍ ରହିଲେ ଭୋଳାନାଥ ବାବୁ ।

ବେଳ ଆସି ଦିନ ଆଠଟା ହେଲାଣି । ଏ ପର୍ଯ୍ୟନ୍ତ ନିଜର ନିତ୍ୟକର୍ମ ସାରିନାହାନ୍ତି । ତା ହାତକୁ ଦଶ ଟଙ୍କାର ନୋଟ୍‌ଟି ବଢାଇଦେଲେ ଓ ଭଙ୍ଗା ପାନର ଜରି ଖୋଳକୁ ପଞ୍ଜାବୀ ପକେଟ୍‌ରେ ଗଳେଇଦେଇ ଚେୟାର ଛାଡି ଚାଲିବାକୁ ଆରମ୍ଭ କଲେ ।

ଆଜ୍ଞା, ମାଫ୍ କରିବେ । ଦୋକାନରୁ ଓହ୍ଲାଇପଡି କାକୁତି ମିନତି ହୋଇ କହୁଥିଲା ନରିଆ ପାନଦୋକାନୀ ।

ଏତେ ଲୋକରେ ଆପଣଙ୍କୁ ଅବିବେକୀ ଭାବେ କେତେ କଥା କହିଗଲି । କିଛି ମନରେ ଘେନା କରିବେ ନି ।

ଏଇ ବହିଟି ନିଅନ୍ତୁ । ମୋ ପାଖରେ ଅଧିକା ଗୋଟେ ଥିଲା । ଗୀତା ବିଷୟରେ ଜାଣିବାକୁ ଆପଣଙ୍କର ଆଗ୍ରହ ଦେଖି, ଏ ବହିଟିକୁ ଦେଉଛି ।

ଫେରାଇବା ଦରକାର ନାହିଁ ।

ପୁଣି ଥରେ ଝୁଙ୍କିପଡି ନମସ୍କାର କଲା ନରିଆ । ମୁଣ୍ଡରେ ବଡ ବଡ ଚନ୍ଦନ ଟୋପା ଦାଉ ଦାଉ ଝଟକୁଥିଲା । ଭୋଳାନାଥବାବୁ ହାତରେ ସ୍ୱାମୀ ଚିଦ୍‌ଭାବାନନ୍ଦ ବ୍ୟାଖ୍ୟା କରିଥିବା ଶ୍ରୀମଦ୍ ଭଗବଦ୍ ଗୀତା ଧରି ଚାଲିବାକୁ ଲାଗିଥିଲେ ।

ଅନେକ ଦିନ ପରେ ଅନୁଭବ କରୁଥିଲେ ନିର୍ବାଚନ ରଣାଙ୍ଗନରେ ପରାସ୍ତ ହେଲେ କଣ ହେଲା, ପୁଣି ଥରେ ଜୀବନ ସଂଗ୍ରାମରେ ଯୁଦ୍ଧ କରିବା ପାଇଁ ତାଙ୍କ ଦେହ ଓ ମନରେ ଅନେକ ବଳ ଓ ସାହସ । ସେ ଗୁଣୁ ଗୁଣୁ ହେବାକୁ ଲାଗିଲେ, ଧର୍ମ କ୍ଷେତ୍ରେ... କୁରୁକ୍ଷେତ୍ରେ... ।



# ଭଗ୍ନ ପିରାମିଡ୍

ହାଓ୍ୱାଇ ଆଡ୍ଡା ନିକଟରେ ପହଞ୍ଚିବା ବେଳକୁ ରାତି ୪ଟା । ଦିଲ୍ଲୀ ଇଣ୍ଟରନ୍ୟାସନାଲ ଏୟାରପୋର୍ଟଟି ଦିନର ସୂର୍ଯ୍ୟକିରଣ ପଡି ତୋଫା ଦେଖାଯିବା ପରି ଆଲୁଅରେ ବିଛାଡି ହୋଇ ପଡି ସେପରି ଦେଖାଯାଉଥାଏ । ସମରେଶ ଓ ଚିତ୍ତବାବୁ ପାହାଡଗଞ୍ଜ ନିକଟରୁ ଟ୍ୟାକ୍ସିରେ ପ୍ରାୟ ରାତି ୩ଟାବେଳେ ବାହାରିଥିଲେ । ରାତିରେ ଅବଶ୍ୟ ଟ୍ୟାକ୍ସିବାଲାକୁ ଆସିବା ପାଇଁ କହିଥିଲେ ନଚେତ୍ କେହି ଆସିବା ପାଇଁ ମଙ୍ଗି ନଥାନ୍ତେ ।

ପାହାଡଗଞ୍ଜରୁ ପ୍ରାୟ ୨୫ କି. ଦୂର । କଟକ-ଭୁବନେଶ୍ୱର ରାସ୍ତା ରାତିର ଶେଷ ପ୍ରହର ଥିବାରୁ ରାସ୍ତା ଜାମ୍ ନଥିଲା ।

ସମରେଶ ଭୁବନେଶ୍ୱରରେ ରହେ । ଦିଲ୍ଲୀ ଆସିଛି ଯିବ ଶାନ୍ତି ସମ୍ମେଳନରେ ଯୋଗ ଦେବ କାଏରୋରେ । ଚିତ୍ତବାବୁ ଡେଲିଗେଟ୍ ମାନଙ୍କର ନେତା ।

ଚିତ୍ତବାବୁଙ୍କ ପୂରା ନାଁ ଚିତ୍ତ ବର୍ମନ । ଡାକନ୍ତି ଚିତ୍ତ ଦା ପ୍ରାୟ ସମସ୍ତେ । ଛୋଟ ନାଁଟି । ମଣିଷଟିଏ ବି ଛୋଟ । ସତୁରୀ ଟପିଯିବା ଆଜକୁ ପାଞ୍ଚବର୍ଷ ହେଲାଣି । ଦେହରେ ସବୁବେଳେ ସୁଟ୍, ପାଟିରେ ପାନ । ମାପି ଚୁପି କଥାବାର୍ତ୍ତା କରନ୍ତି । ଦୀର୍ଘ ବର୍ଷ ଧରି ଶାନ୍ତି ଆନ୍ଦୋଳନର ନେତା ଓ ପ୍ରବକ୍ତା । ଆନ୍ତର୍ଦେଶୀୟ ସମ୍ମିଳନୀରେ କେତେ ଯେ ସେ ଯୋଗ ଦେଇଛନ୍ତି, ତାହା ତାଙ୍କ ହିସାବ ଖାତାରେ ନାହିଁ । ଅବଶ୍ୟ ଜୀବନଟା ହିସାବଖାତା ନୁହେଁ; ମିଶାଣ ଫେଡାଣ ପରି ସଂଖ୍ୟାର କୁହୁକ ଭିତରେ ସେ କେବେ ଧନ୍ଦି ହୋଇ ନାହାନ୍ତି ।

ବ୍ୟାଚଲର୍ ଜୀବନ । ନାରୀ ମାନେ ତାଙ୍କ ଜୀବନ ଭିତରକୁ ପ୍ରବେଶ କରି ନାହାନ୍ତି ଏ କଥା କୁହାଯାଇ ନପାରେ । ସେ କିନ୍ତୁ ଅବିବାହିତ । ନୂଆଖାଲି ଗଣ୍ଡଗୋଳ ବେଳେ କଲିକତାକୁ

ତାଙ୍କ ପରିବାର ଅନ୍ୟମାନଙ୍କ ସହିତ ମିଶି ଆସିଥିଲେ ।

କଲିକତାରୁ ଦିଲ୍ଲୀ ଆସିବା ତାଙ୍କର ପ୍ରାୟ ପଚାଶ ବର୍ଷ ଅତିକ୍ରମ କଲାଣି । ଅର୍ଦ୍ଧଶତାବ୍ଦୀ ଧରି ତାଙ୍କର ଏହି ଭଡାଘରେ ସେ ନିଜେ ମାଲିକ, ରୋଷେୟା ଓ ଚାକର । ଖାଇବା ଓ ଖୁଆଇବାରେ ସେ ଓସ୍ତାଦ୍ । ସେଇଥିପାଇଁ ତାଙ୍କ ଘରେ ଭିଡ ଜମେ ଦେଶୀ ଓ ବିଦେଶୀ ଅତିଥି ମାନଙ୍କର । ସମରେଶ ଥାଏ ପାହାଡଗଞ୍ଜର ହୋଟେଲ ଟୁରିଷ୍ଟରେ । ଏହା ତାର ଦିଲ୍ଲୀ ରହଣୀର ଆବାସସ୍ଥଳ । ଅନେକ ଦିନ ଧରି ଯିବା ଆସିବା ଫଳରେ ଟୁରିଷ୍ଟ ହୋଟେଲ ନିଜର ଘର ପରି ହୋଇଯାଇଥାଏ ।

ଭୋର ପାଞ୍ଚଟା ବେଳେ ପ୍ଲେନ । ରିପୋଟିଂ ଚାରିଟା । ସମରେଶ ବହୁ ଦିନ ଧରି ବିଦେଶ ଯାଉଥିଲେ ବି ରାତିରେ ଏକା ଏକା ଯିବାକୁ ତାର ଭାରି ଭୟ । ପୁଣି ଦିଲ୍ଲୀ ସହର । ଯେଉଁଠି କେତେବେଳେ କେଉଁଠି ବୋମା ପଡି ବିସ୍ଫୋରଣ ଘଟିପାରେ ।

ଚିନ୍ଦ ଦା ତ ଅନୁଭବୀ ମଣିଷ । ଜାଣି ପାରିଥିଲେ ସମରେଶ କଣ ଭାବୁଛି ।

ତୁମେ ମୋ ଘରକୁ ଚାଲିଆସ । ସେଇଠୁ ସାଙ୍ଗ ହୋଇ ଏୟାରପୋର୍ଟକୁ ଯିବା । ମୋ ଘରେ ଖାଇବା ସାଙ୍ଗ ହୋଇ ।

ରାତି ୮ଟା ବେଳକୁ ଘର ଖୋଜି ସମରେଶ ପହଞ୍ଚି ଯାଇଥିଲା ଚିନ୍ତ ଦାଙ୍କ ଘରେ । ଘର ନୁହେଁତ, ଏକ ଛୋଟ ଅବ୍ୟବସ୍ଥିତ ମ୍ୟୁଜିୟମ । ବିଦେଶର ନାନା ପ୍ରକାର ଜିନିଷ ଘରସାରା ଗଦା ହୋଇଛି, ପଢା ଶେଷ ପରେ ଦୈନିକ ଖବରକାଗଜ ଫିଙ୍ଗା ହେବା ପରି । ଆଲମିରା, ଖଟ ଓ ସୋଫାସେଟ୍ । ଖଟ ଉପରେ ମୋଟା ଗଦି ଓ ଚଦ୍ଦରପୋଷ । ଖଟ ଉପରକୁ ଆବୋରି ରହିଥିବା ଜିନିଷ ଭିତରେ ଚଷମା ଦୁଇ ତିନି ପ୍ରକାରର । ଔଷଧ, ଟେଲିଫୋନ ଡାଏରୀ ଇତ୍ୟାଦି । ଖଟତଳେ ଚାରି ପାଞ୍ଚଟା ମୋଟା ମୋଟା ବାକ୍ସ ଓ ବ୍ୟାଗ୍ ସହିତ ଢେର ଜିନିଷ । ଲୁଗା ଆଲଣାରେ ପ୍ୟାଣ୍ଟ, ସାର୍ଟ ଓ ଭଲିକି ଭଲି ଟାଇ । ପ୍ରତ୍ୟେକ ସୁଟ୍‌କୁ ମ୍ୟାଚ୍ କରି ଟାଇ । ସବୁ ବିଦେଶୀ । ପ୍ୟାଣ୍ଟ, ସାର୍ଟ ଓ ଟାଇ । ସଫାରୀ ସୁଟ୍ କେତୋଟି ମଧ୍ୟ ।

ସମରେଶ ଚାହୁଁଛି ଆବାକାବା ହୋଇ ସେ ଘରଟିକୁ । ହାଇଦ୍ରାବାଦ ସାଲାରଜଙ୍ଗ ମ୍ୟୁଜିୟମ୍‌ରେ ଯେତେ ଦର୍ଶନୀୟ ଜିନିଷ ରହିଛି, ତା ଠାରୁ ଅଧିକ ଏହି ଘରଟିରେ । କିନ୍ତୁ ନିହାତି ବେପରୁଆ, ଅବ୍ୟବସ୍ଥିତ ଓ ଅନାକର୍ଷଣୀୟ ଭାବରେ । ବଖରାଟି ଚିତ୍ତଦାଙ୍କ ଜୀବନର ନିଛକ ପ୍ରତିଛବି । ତାଙ୍କ ଜୀବନ ସଂପର୍କରେ ସମରେଶ ଯଦିଓ ବେଶି କିଛି ଜାଣିନି, ତଥାପି ସେହି ବଖରାଟି ଜଣେ ବ୍ୟାଚଲରର, ଏକଥା ଦେଖିବା ମାତ୍ରେ ଯେ କେହି ଭାବିବ । ଅବଶ୍ୟ ସେଠାରେ ଏକ ଲାସ୍ୟମୟୀ ନାରୀ ଏକ ଶିଶୁପୁତ୍ରକୁ କୋଳରେ ଧରି ବସିଥିବାର ଏକ ଚିତ୍ର ଟଙ୍ଗାହୋଇ ମଦର ମେରୀ ଓ ଶିଶୁ ଯୀଶୁଙ୍କର ଭ୍ରମ ସୃଷ୍ଟି କରୁଥିଲା । ଠିକ୍ କଳାଧଳା ଟି.ଭି.ର ଉପରକୁ ।

ସୋଫା ଉପରେ ନିଜର ଶରୀରଟିକୁ ଥୋଇ ଦେଇ ଗୋଡ ଲମ୍ୱାଇ ଦେଲା ସମରେଶ । ସେ ପର୍ଯ୍ୟନ୍ତ ତାର ଦୀର୍ଘ ନିଶ୍ୱାସ ନେବା ସରି ନଥାଏ । ସତେକି ସେ ଗୋଟିଏ ମସ୍ତବଡ ପାହାଡ

ଚଢ଼ି ଆସିଛି । ଚିତ୍ତଦାଙ୍କ ଘର ଭିତରକୁ ଆସିବା ପାଇଁ ଥିବା ରାସ୍ତା ପାହାଡଠାରୁ କମ୍ ନଥିଲା । "କଣ ଏତିକିରେ ନିଶ୍ୱାସ ନେବାକୁ କଷ୍ଟ ପାଉଛ ? ଗୋଡ ଲମ୍ବାଇ ବସିଲଣି ? ଟୋକା ଲୋକ ପରି ଜଣା ପଡୁନା ତ !" ସେ କୌଣସି ଉତ୍ତରକୁ ଅପେକ୍ଷା ନ ରଖି କହି ଚାଲିଥିଲେ । ପ୍ରଶ୍ନ ତ ନୁହେଁ ଆକ୍ଷେପ । ବୟସ ଓ ଯୌବନ ପ୍ରତି ଆକ୍ଷେପ ।

ଆଖିବୁଜି ଗୋଡ ଲମ୍ବାଇ ଧ୍ୟାନସ୍ଥ ହୋଇ ବସିଥିଲା ସମରେଶ ।

କେମିତି ଲାଗୁଛି ମାଛ କାଳିଆ ? ହଁ, ତୁମ ଘରେ ସ୍ତ୍ରୀ ଅଛନ୍ତି । ଭଲ ରାନ୍ଧି ଖାଇବାକୁ ଦେଉଥିବାର ତୁମ ଚେହେରାରୁ ଜଣା ପଡୁଛି । ଚିତ୍ତ ଦାଙ୍କର ପ୍ରଶ୍ନ ଓ ଉତ୍ତରରେ ସମରେଶର ମନ ତା ସ୍ତ୍ରୀଙ୍କ ନିକଟକୁ ନେଇଗଲା । ଦିଲ୍ଲୀ ଆସିବାବେଳେ ପତ୍ନୀ କହିଥିଲେ, ବିଦେଶରେ ନିଜ ପ୍ରତି ଓ ନିଜ ଦେହ ପ୍ରତି ଖିଆଲ କରିବ । ହଠାତ୍ ପତ୍ନୀଙ୍କ ରନ୍ଧାର ପ୍ରଶଂସା ଶୁଣି, ତାଙ୍କ ବିଷୟରେ କିଛି କହିବାକୁ ଇଚ୍ଛା ହେଉଥିଲେ ମଧ୍ୟ ଚୁପ୍ ରହିଲା ସମରେଶ । ସମରେଶର ବାହା ହେବା ଆଜକୁ ପଚିଶ ବର୍ଷ ହେଲାଣି । ନିଜରପତଳା ଦେହରେ ଚର୍ବି ଲାଗି ଯାଇଥିବାର ପ୍ରମାଣ ପାହାଚ ଚଢ଼ିବାକୁ ଚିତ୍ତଦାଙ୍କୁ ମାଲୁମ ପଡି ଯାଇଥିଲା ।

ରାତି ୧ ୧ଟା । ଆଉ ମାତ୍ର ଚାରିଘଣ୍ଟା ବାକି । ଟ୍ୟାକ୍ସିବାଲା ଡାକିବାକୁ ଆସିବ । ସମରେଶ ସୋଫା ନିକଟରେ ସପଟିଏ ଲମ୍ବ କରି ପକାଇ ଦେଇ ଶୋଇ ପଡିଲା ନିଘୋଡ ନିଦରେ । ନିଦୁଆ ଆଖିରେ ନିତ୍ୟକର୍ମ ସାରି ଦୁହେଁ ପହଞ୍ଚି ଥିଲେ ଦିଲ୍ଲୀ ଇନ୍ଦିରାଗାନ୍ଧୀ ଆନ୍ତର୍ଜାତୀୟ ବିମାନଘାଟିରେ । ଅପେକ୍ଷା ଥିଲା କେତେବେଳେ ପ୍ଲେନ୍‌ରେ ଚଢ଼ିବେ । ସିକ୍ୟୁରିଟ୍ ଚେକ୍ ଇତ୍ୟାଦି କାର୍ଯ୍ୟ ଶେଷ ହୋଇଥିଲା ।

ଚିତ୍ତଦା ବହୁଦିନ କାଏରୋରେ ଥିବାର ସେ ଜାଣିଥିଲା । ନାସେର ଟିଟୋଙ୍କ ସହିତ ତାଙ୍କର ଘନିଷ୍ଠ ପରିଚୟ ଥିବାର ଫଟୋ ତାଙ୍କର ସେଇ କୋଠରୀ ମଧ୍ୟରେ ଝୁଲୁଥିବାର ସମରେଶର ଆଖିରୁ ଏଡାଇ ପାରି ନଥିଲା । ବହୁଦେଶ ବୁଲିଥିବା ଚିତ୍ତ ଦା କିନ୍ତୁ ଜଣା ପଡୁଥିଲେ ସାଧା ସିଧା ମଣିଷ । ଅନ୍ୟମାନଙ୍କ ପରି ନିଜର ବାହାଦୁରୀ ଦେଖାଉ ନ ଥିବା ଖାସ୍ ଲୋକଟିଏ ।

ଅମନ୍ ଏୟାରପୋର୍ଟ ଡ୍ୟୁଟି ଫ୍ରି ଦୋକାନରେ ବୁଲିବାବେଳେ ସେ କିଣିଲେ ଏକ ବଡ ହ୍ୱିସ୍କି ବୋତଲ ଓ ଚକୋଲେଟ୍ ପ୍ୟାକେଟ୍ । ହ୍ୱିସ୍କି ତାଙ୍କର ପ୍ରିୟ । ବିଦେଶରେ ରହୁଥିବା ଲୋକମାନଙ୍କୁ ବିଦେଶୀ କାଇଦାରେ ରହିବା ପାଇଁ ବିଦେଶୀ ପାନୀୟର ବ୍ୟବହାର ଶିଖିବାକୁ ହୁଏ । ଚିତ୍ତଦାଙ୍କର ପାନ, ପାନ ଜର୍ଦା ଓ ପାନୀୟ ନ ହେଲେ ବୋଧହୁଏ ଚଳେନା ଏକଥା ସମରେଶ କାଏରୋ ହୋଟେଲ ରୁମ୍‌ରେ ଜାଣିବାକୁ ପାଇଲା । ବ୍ୟାଚଲର ଜୀବନର ଅନୁଗାମୀ ଏମାନେ । ଏକଲା ପଣକୁ ସାମୟିକ ଭୁଲି ଯିବାର ଏକମାତ୍ର ମାଧ୍ୟମ ।

ସମରେଶ ପାଇଁ ଚିତ୍ତ ବର୍ମନ ଥିଲେ ନୂତନ ଆବିଷ୍କାର । ହୋଟେଲ ସଫିରର ବ୍ୟାଲେ ନୃତ୍ୟଶାଳାରେ ବସିଥିଲା ସମରେଶ । ରାତି ପ୍ରାୟ ଗୋଟେ । ଗ୍ଲାସ ମାନଙ୍କର ଟୁଂ ଟାଂ ଶବ୍ଦ । ନିଷ୍ପ୍ରଭ ଆଲୋକ ଟେବୁଲକୁ ଘେରି ବସିଥିବା ମଣିଷ ମାନଙ୍କର ସ୍ଥିତିକୁ ଅବଗତ କରାଉଥିଲା ।

ନାଚ ଆରମ୍ଭ ହେବାକୁ ଆଉ କିଛି ସମୟ ବାକି । ସୁରା, ସାକୀ ଓ ସଂଗୀତର ସମ୍ମେଳନରେ ସମ୍ମୋହିତ ଥିଲେ ସଭିଏଁ । ସମରେଶ ଏକାକୀ ବସି ଭାବୁଥିଲା କଲମ୍ କଥା । ଗତ ଦୁଇଦିନ ତଳେ ଚିହ୍ନା ହୋଇଥିବା ମଧ୍ୟବୟସ୍କା ନାରୀଟି ସହିତ, ଯାହାର ଓଠରୁ ଝରି ପଡୁଥିବା ହସରେ ବାନ୍ଧି ହୋଇ ପଡିଥିଲା ସେ, ବଡ ବଡ ଗଛରେ ଲଟା ବାନ୍ଧି ହୋଇ ରହିବା ପରି ।

କଲମ୍ । ଆଇମ୍ କଲମ୍ । ଶାନ୍ତି ପତ୍ରିକାର ଟେକ୍ନିକାଲ ଏଡିଟର୍ । ବୟସ ଅନ୍ଦାଜ ତିରିଶ । ଗୌରବର୍ଣ୍ଣ । ଡେଙ୍ଗା ନାକ । ବବ୍‌କରା କଳା କଳା ବାଳ । ମୁହଁରେ ବିଛି ହୋଇ ପଡିଥିବା ହସ ।

ଆପଣଙ୍କ ଲେଖା ବେଶ୍ ଚମତ୍କାର, ସାରଗର୍ଭକ । କ୍ଷୁଦ୍ର ଅଥଚ ଶକ୍ତିଶାଳୀ । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ସେ ହଠାତ୍ ଲଞ୍ଚ ଖାଇବା ବେଳେ ସମରେଶଙ୍କୁ ଇଂରାଜୀରେ କହିଲେ । ବାସ୍, ଏତିକି କଥାରେ ଓଦା ହୋଇଗଲା ସମରେଶର ହୃଦୟ ସ୍ପଞ୍ଜ୍ ପରି । ମନ ଖୋଲା ଚାହିଁଲା ତାକୁ ସେ । ତାର ହସ ହସ ମୁହଁକୁ କ୍ୟାମେରାରେ ବାନ୍ଧି ରଖିଲା । ତା ପାଇଁ କବିତାଟିଏ ଲେଖି ଉପହାର ଦେବାକୁ ମଧ୍ୟ ଭୁଲିଲା ନାହିଁ । କବିତାର ଶୀର୍ଷକ ଥିଲା, ମାଇଁ କଲମ୍ ।

କଥାଟିର ପୂର୍ଣ୍ଣଚ୍ଛେଦ ସେଇଠି ପଡି ନଥିଲା । ସମରେଶ ତାକୁ ନିମନ୍ତ୍ରଣ କରିଥିଲା ତା ସହିତ ଡିନର କରିବାକୁ ଓ ବ୍ୟାଲେ ନୃତ୍ୟରେ ଯୋଗ ଦେବାକୁ । ବ୍ୟାଲେ ହଲ୍ ଘରର ସ୍ତିମିତ ଆଲୋକ ତଳେ ରାତ୍ରିର ଅର୍ଦ୍ଧେକ ପ୍ରହରରେ ବସି ଭାବୁଥିଲା ସମରେଶ । ଚାହିଁଥିଲା କଲମ୍‌ର ଆସିବାକୁ । ନୃତ୍ୟ ଆରମ୍ଭ ହୋଇ ଯାଇଥିଲା । ପାନୀୟର ପ୍ରଭାବରେ ନିଜ ନିଜର ସାଥୀମାନେ ପରସ୍ପର ଭିତରେ ଓଲଟ ପାଲଟ ହୋଇ ଯାଉଥିଲେ । ସମରେଶ କିନ୍ତୁ ଅପେକ୍ଷା କରିଥିଲା କଲମ୍ ଆସିବାକୁ । ନୀଳନଦୀ କୋଳରେ ଡଙ୍ଗାରେ ବୁଲିଥିବା ବେଳେ ମଧ୍ୟ ସେ କଲମ୍‌କୁ ଚିନ୍ତା କରିଥିଲା । ସମରେଶ୍ କଳ୍ପନାର ନାରୀ କଲମ୍ । ଜୀବନରେ ଅନେକ ନାରୀଙ୍କୁ ସେ ଯେ କଳ୍ପନା ଛବିରେ ନ ଆଙ୍କିଛି, ତା ନୁହେଁ । କିନ୍ତୁ ବାସ୍ତବତା ତା କଳ୍ପନା ଠାରୁ ଢେର ଦୂରରେ । ଅନେକ ଦୂର । ଯେମିତି କାଏରୋ ଠାରୁ ଭୁବନେଶ୍ୱର ବା ଭୁବନେଶ୍ୱର ଠାରୁ କାଏରୋ ।

ହଲ୍ ଘରେ ଚାଲିଥିଲା ବ୍ୟାଲେ । ନୃତ୍ୟରତା ରମଣୀର କଟିଠାରୁ ସ୍ତନ ପର୍ଯ୍ୟନ୍ତ ଉନ୍ମୁକ୍ତ । ପବନର ତାଣ୍ଡବଲୀଳାର ପରିଚୟ ଦେଉଥିଲା । ସମରେଶର ଆଖି ହଲ୍ ଘର ଦୁଆର ମୁହଁଠାରୁ ନୃତ୍ୟାଙ୍ଗନା ରମଣୀ ପର୍ଯ୍ୟନ୍ତ ରହି ରହି ବୁଲି ଆସୁଥିଲା । ଫୁଲ ବଗିଚାରେ ଭ୍ରମରଟାଏ ଏ ଫୁଲରୁ ସେ ଫୁଲକୁ ଛୁଇଁଯିବା ପରି । ବ୍ୟାଲେ ନୃତ୍ୟ ସରିଗଲା । ଲିଭିଗଲା ନିସ୍ତବ୍ଧ ଆଲୋକ । ଟଳି ଟଳି ଫେରିବାକୁ ଆରମ୍ଭ କରିଥିଲେ ଉପଭୋଗରେ ଲିପ୍ତ ଥିବା ଯୋଡିମାନେ । ସମରେଶ ଫେରି ଆସୁଥିଲା ୪୧୦ ନମ୍ବର ରୁମ୍‌କୁ । ଆଖିରେ ନିଦ ମାଡି ମାଡି ପଡୁଥିଲା । ତା ପରଦିନ କଲମ୍ ଆସି ନଥିଲା ସଭାଗୃହକୁ । ସୁନ୍ଦର ଆଖିର ହସ ହସ ଚାହାଣୀ ସଙ୍ଖୋଳୁ ନଥିଲା ସମରେଶକୁ । ଚିଉଦା ପଚାରୁଥିଲେ, କଣ କାଲି କେତେ ପେଗ୍ ବ୍ୟାଲେ ନୃତ୍ୟରେ ପିଇଛ ? ଆଖି ଲାଲ ଦେଖା ଯାଉଛି ଯେ ? ନାଚ ଜମିଲା ତ ? ତୁମେ କଲମ୍‌କୁ ନାଚ ପାଇଁ ନିମନ୍ତ୍ରଣ କରିଥିଲ ବୋଲି ସେ

ମୋତେ କହୁଥିଲା । ସମରେଶର ମନରେ ଝଡ ଉଠିଲା । ବିକ୍ଷୁବ୍ଧ ଓ ଅଶାନ୍ତ ଝଡ । ସେ ଚିଉଦାଙ୍କୁ କୌଣସି ଉତ୍ତର ଦେଲାନି । କଣ ବା ଉତ୍ତର ଦେଇ ଥାନ୍ତା ! କିନ୍ତୁ ଚିଉ ଦା ତାର ଅକୁହା ଗୋପନ କଥାକୁ ଜାଣିଲେ କେମିତି । ମିଟିଂ ସରି ଯାଇଥିଲା । ମନ ଘରମୁହାଁ ଧରିଥିଲା । ଚିଉ ଦା ରହି ଯାଇଥିଲେ କାଏରୋରେ । ବଂଧୁମାନଙ୍କ ଗହଣରେ ଆଉ କିଛି ଦିନ ନୀଳନଦୀରେ ନୌକାରେ ବା ସଫିର ହୋଟେଲରେ ବସି ହ୍ୱିସ୍କି ପିଇବାକୁ ।

ସମରେଶ ଫେରୁଥିଲା ମନରେ ଅନେକ ଦୁଃଖ ଓ ମୁଣ୍ଡରେ ବିରାଟ ବୋଝ ବୋହି । ସେ ଜାଣି ପାରୁ ନଥିଲା ନୀଳନଦୀ ଓ ପିରାମିଡର ମୋହ ଦ୍ୱାରା ଏତେ କେମିତି ସେ ଆକ୍ରାନ୍ତ ହୋଇଗଲା । ହୋଟେଲ ସଫିରରୁ ବାହାରିବାବେଳେ ଚିତ୍ତ ଦା ତା ହାତକୁ ବଢାଇ ଦେଲେ ଗୋଟିଏ ଲଫାପା । ସୁନ୍ଦର ଅକ୍ଷରରେ ତା ନାଁ ଲେଖାଥିଲା ନିର୍ଭୁଲ ଭାବରେ । ପ୍ଲେନ୍‌କୁ ଅପେକ୍ଷା କରି ବସିଥିବା ବେଳେ ସମରେଶ ଚିଉ ଦା ଦେଇଥିବା ଲଫାପାଟିକୁ ଖୋଲିଥିଲା । ଖୋଲିବା ପରେ ତା ଭିତରୁ ପାଇଥିଲା ସ୍ୱଚ୍ଛ ଇଂରାଜୀରେ ଲେଖାଥିବା କାଗଜ ଖଣ୍ଡିଏ ।

ପ୍ରିୟ ବଂଧୁ;

ଆପଣଙ୍କ ନିମନ୍ତ୍ରଣ ବ୍ୟାଲେ ନୃତ୍ୟରେ ଯୋଗ ଦେବାକୁ ରକ୍ଷା ନକରି ପାରି ମୁଁ ଦୁଃଖିତ । ହଠାତ୍ ମୋ ପୁଅର ଏକ ମଟର ଏକ୍ସିଡେଣ୍ଟ ହେବାଦ୍ୱାରା ତାକୁ ଡାକ୍ତରଖାନାରେ ଭର୍ତ୍ତି କରିବାକୁ ହେଲା । ତାର ବଂଚିବା ନ ବଂଚିବା ଆଲ୍ଲାଙ୍କ କୃପା ଉପରେ, ଓ ଆପଣମାନଙ୍କ ପରି ବଂଧୁମାନଙ୍କ ଆଶୀର୍ବାଦ ଉପରେ ନିର୍ଭର କରେ । ସେହି ପିଲାଟି ତ ମିଃ ବର୍ମନଙ୍କ ଦାନ । ଦଶବର୍ଷ ତଳେ ଏହି ଅନାଥ ଦରିଦ୍ର ବାଳକଟିକୁ ସେ ମୋ ହାତକୁ ଟେକି ଦେଇ ମୋତେ ମାତୃତ୍ୱ ଗୌରବ ପ୍ରଦାନ କରିଥିଲେ । ମୋର ଅନ୍ଧର ଲଉଡିର ଏପରି ଦୁର୍ଦ୍ଦଶାରେ ମୁଁ ବା କିପରି ଯାଇ ପାରିଥାନ୍ତି ! ମୁଁ ଜାଣେ ଆପଣ ମୋତେ ଅପେକ୍ଷା କରି ନିରାଶ ହୋଇଥିବେ । ହୁଏତ ମୋ ଉପରେ ରାଗି ଥାଇ ପାରନ୍ତି । ମୁଁ ଯିବା ଅବସ୍ଥାରେ ନ ଥିବାରୁ ମିଷ୍ଟର ବର୍ମନଙ୍କୁ ଟେଲିଫୋନ୍ କରି ଜଣାଇଥିଲି କାରଣ ଆପଣଙ୍କ ରୁମ୍‌ର ଟେଲିଫୋନ୍‌ର ଉତ୍ତର ମିଳି ନଥିଲା । ମିଃ ବର୍ମନଙ୍କ ପରି ଆପଣ ମୋ ପାଇଁ ଜଣେ ସହୃଦୟ ବଂଧୁ । ଆପଣଙ୍କର ବନ୍ଧୁତ୍ୱ ବିଶ୍ୱପ୍ରେମର ଭାବ । ଯେମିତି ଆମର ଏଠାକାର ପିରାମିଡ । ତାହା ଯଦିଓ କ୍ରମଶଃ ଭାଙ୍ଗିଯିବାରେ ଲାଗିଛି । ଆପଣଙ୍କ ବଂଧୁତ୍ୱକୁ ମୁଁ ମନେ ରଖିବି ସବୁଦିନେ । ଆପଣଙ୍କର କଲମ୍ ।

ପ୍ଲେନ୍ ବୋର୍ଡିଂ କରିବାରସୂଚନା ବୋର୍ଡରେ ଘୋଷିତ ହେଲା । ସମରେଶ ଚାହିଁଥିଲା କାଏରୋ ଏୟାରପୋର୍ଟର ଦୁଆରମୁହଁକୁ ଯେଉଁଠି ଲାଗିଥିଲା ଭାଙ୍ଗି ପଡିଥିବା ପିରାମିଡ୍‌ର ଏକ ବିରାଟ ଚିତ୍ର । ବିଶ୍ୱ ମାନବ ସଭ୍ୟତାରେ ଶାନ୍ତି, ମୈତ୍ରୀ ଓ ପ୍ରୀତିର ପ୍ରତୀକ । ବିଦେଶୀ ପର୍ଯ୍ୟଟକ ମାନଙ୍କର ଆଶା, ଆକାଂକ୍ଷା ଓ ଆସକ୍ତିର ସନ୍ତକ ।



# କାବୁଲି ମହାନ୍ତିକୁ ଶେଷ ପ୍ରଶ୍ନ

କାବୁଲି ମହାନ୍ତି ମରିଗଲା ।

ମରିଗଲା ମୋରି ଆଖି ସାମନାରେ । ମୁଁ ତାକୁ ବଲବଲ କରି ଚାହିଁଥିଲି । ସେ କେମିତି ମରିଗଲା, ମୁଁ ମନେ ମନେ ଭାବିବାକୁ ଆରମ୍ଭ କରି ଦେଇଥିଲି । ପ୍ରାଣ ପକ୍ଷୀ ଉଠିଗଲା । କେଉଁବାଟେ ଗଲା, ମୋତେ ଜଣା ପଡୁ ନଥିଲା ।

କାବୁଲି ମହାନ୍ତି ବିଛଣା ନିକଟରେ ବସି ତାକୁ ଚାହିଁ ଦେଖୁଥିଲି ସେ କେମିତି ଫୁଲି ଯାଇଛି । ପାଟି ଆଁ କରି ଦାନ୍ତଗୁଡାକ ବାହାରି ପଡିଛି ।

କୋମାରେ ଥିବା କାବୁଲି ମହାନ୍ତିକୁ ଦେଖିବାକୁ ମୁଁ ଯାଇଥିଲି । ପ୍ରଚଣ୍ଡ ଖରାସବ୍ୱେ ମୁଁ ପହଞ୍ଚି ଯାଇଥିଲି ତା ଘର ପାଖରେ ପଚାରି ପଚାରି । ଜଂଟଣୀ ଛୋଟ ଟାଉନ୍ । ରେଲୱେ କର୍ମଚାରୀ ବେଶି । ଟ୍ରେନ୍ ଲାଇନ ବିଛାଡି ହୋଇପଡିବା ପରି ।

ଷ୍ଟେସନ ଛକରେ ପହଞ୍ଚି ପଚାରିବା ମାତ୍ରେ ରିକ୍ସାବାଲା ଦେଖାଇ ଦେଲା ତାର କନ୍ଥାକନ୍ଥା ମଧ୍ୟମା ଆଙ୍ଗୁଳି ।

ହେଇ, ସେଇ ରାସ୍ତାରେ ଯାଆନ୍ତୁ । ଯେଉଁଠି ସରିଛି ଏ ରାସ୍ତା ଦୋକାନ । ଠିକ୍ ତା ଘର ।

ନାଲି ଜାମା ପିନ୍ଧିଥିବା କୁଲିଟିଏ ପାଖରେ ଠିଆହୋଇ ମୋତେ ଚାହିଁଲା । ସେ ମୋତେ ଚିହ୍ନିଛି । ମୁଁ କିନ୍ତୁ ତାକୁ ଚିହ୍ନି ପାରୁନି । ତା ନାଁ ମଧ୍ୟ ମୋର ମନେ ନାହିଁ । ମୁଁ ତାକୁ କୁଲି ବୋଲି ଡାକିବାକୁ ସଙ୍କୋଚ କରୁଥିଲି । ରେଳଷ୍ଟେସନ ହୋଇଥିଲେ ତାକୁ ବଡ ପାଟିରେ ଡାକିଥାନ୍ତି, କୁଲି, କୁଲି ।

ମୁଁ ତାକୁ ଡାକିଲି, ହେ ବାବୁ ! କାବୁଲି ମହାନ୍ତିକୁ ଚିହ୍ନିଛ ? ସେ ରେଲୱେରେ ନେତାଗିରି କରୁଥିଲା ବୋଲି ଶୁଣିଥିଲି । ସେ କଣ କଣ କରୁଥିଲା, ତାର ହିସାବ ମୋ ପାଖରେ ନାହିଁ ।

ମୋର ବାବୁ ଡାକରେ କୁଲି ଯେପରି କୃତଜ୍ଞତାରେ ନଇଁ ପଡିଲା ।

ଆଜ୍ଞା ! ସେଇ ଦିଗରେ । କଣ ବେମାର ପଡିଛି ।

ସ୍କୁଟର ଆଗକୁ ଗଲା । ହମସ୍, ବିଲରେ ବନ୍ଧା ହୋଇଥିବା ହୁଡା ପରି । ରାସ୍ତା ଶେଷ । ଆଗରେ ରେଲୱେ କଲୋନୀର ଚାରି ପାଞ୍ଚଟି ଘର । ନର୍ଦ୍ଦମା ନାଳ । କଳା ମଚମଚ ପାଣିରେ ସାଲୁରୁ ବାଲୁରୁ ପୋକ । ଦୂରକୁ ଦେଖା ଯାଉଛି ରେଳ ସିଗନାଲ ଖୁଣ୍ଟି ।

ବହୁବର୍ଷ ତଳେ ତାକୁ ଦେଖିବାକୁ ଆସିଥିଲି । ଏମିତି ବେମାର ପଡିଥିଲା । ବେଶି ଚିନ୍ତା କରିବାର ନଥିଲା ।

ମୋତେ ଦେଖିବା ମାତ୍ରେ ସଂଭ୍ରମେ ଉଠି ନମସ୍କାର କଲା । ମୁଁ ତାକୁ ଥଟ୍ଟାରେ ପଚାରିଲି, କଣ ମଦ ନିଶାରେ ଦେହ ଖରାପ ?

ଠୋ ଠୋ ହସି ଉଠିଲା ସେ ।

ଆପଣ ତ ସେଇଆ କହିବେ । ମୁଁ କଣ ଆଉ ମଦ ପିଉଛି ।

ବୁଝିଲେ ଭାଇନା ! ଏ ପୁଣି ମଦ ଛାଡିବେ । ସେତକ ଯଦି କରିଥାନ୍ତେ, ଆଜି ଏ ଅବସ୍ଥା କାହିଁକି ହୋଇଥାନ୍ତା । ଦେଖୁ ନାହାନ୍ତି । କେମିତି ହେଲାଣି । ଆମ କଥା ପାଣିର ଗାର ତାଙ୍କ ପାଇଁ । ଆପଣଙ୍କ କଥା ରଖି ପାରନ୍ତି ଯଦି । ଦୁଃଖ ଓ ଅଭିମାନ ଭରା କଣ୍ଠରେ ତା ସ୍ତ୍ରୀ ମୋତେ କହିଲା ।

ମୁଁ କାବୁଲି ମହାନ୍ତିଠାରୁ ବୟସରେ ବଡ । ସେ ଓ ତା ସ୍ତ୍ରୀ ମୋତେ ଭାଇନା ଡାକନ୍ତି । କାବୁଲି ମହାନ୍ତିର ମୋ ପ୍ରତି ସ୍ନେହରେ କେବେ ଊଣା ହୋଇନି । ତା ପରିବାରର ଲୋକଙ୍କର ମୋ ପ୍ରତି ଢେର ସମ୍ମାନ । ପରିବାର କହିଲେ ସ୍ତ୍ରୀ, ଝିଅ ଓ ପୁଅଟେ । ସ୍ତ୍ରୀଙ୍କର ପାନଖିଆ ଦାନ୍ତ ଡରକୁଳ ମଞ୍ଜିପରି । କିନ୍ତୁ କଥା କହିବା ବେଳେ ଭଦ୍ର ଓ ମାର୍ଜିତ । ଦେଖିବା ମାତ୍ରେ ପାଦଧୂଳି ନେଇ ମୁଣ୍ଡିଆ ମାରିବେ ।

ଝିଅଟି ସବାସାନ । କଲେଜରେ ବି.ଏସ୍.ସି ପଢେ । ସେଇତ ମୋତେ ଅଟକାଇ ଦେଲା ତାର ନମ୍ରତାରେ ସେଦିନ ।

ଦାଦା, ଆପଣ କଣ ଖାଲି ଚାଲିଯିବେ । ମୁଁ ଟିକିଏ ଚା କରେ । ନା, ସରବତ । କୋଲଡ୍ ଡ୍ରିଙ୍କସ୍ ମଗାଇ ମୋ ହାତକୁ ବଢାଇ ଦେଲା ଗ୍ଲାସ ।

ସେଦିନ ମୋତେ ଦେଖିବା ମାତ୍ରେ କାବୁଲି ମହାନ୍ତିର ସ୍ତ୍ରୀ ଚିଦ୍‌କାଦ୍ ପଡିଥିବା ସଉପଟିକୁ ତରବରରେ ମୋଡି ପକାଇଲା ବିଲରେ ବିଛାଡି ହୋଇ ପଡିଥିବା କଟାଧାନକୁ ବିଡା ବାନ୍ଧିବା ପରି । ସେ ଯେମିତି ମୋରି ଆସିବାକୁ ଚାହିଁଥିଲା ।

ମୁଁ କିଏ ? କଣ ମୋର ତାଙ୍କ ସହିତ ସଂପର୍କ ? ସେ ସଂପର୍କରେ ଏତେ ଦରଦ କେଉଁଠୁ ଆସିଲା ? ଏକଥା ଭାବିଲେ ମୋତେ ବି ଆଶ୍ଚର୍ଯ୍ୟ ଲାଗେ । ମୁଁ ସମୁଦ୍ର ବେଳାଭୂମିରେ ଚାଲିବା

ପରି ଅନୁଭବ କରେ । ସୁଲୁସୁଲିଆ ପବନ ପାଣିଢେଉ ସହିତ ଦେହରେ ଛୁଇଁ ହୋଇ ଚାଲିଯାଏ । ଶୁଖିଲା ବାଲି ଭିତରେ ପାଦ ଦୁଇଟି ହଜି ଯିବାକୁ ଚାହାନ୍ତି । ବଡ ବଡ ବାଲି ରଗଡା ରଗଡି ହୋଇ ଯାଆନ୍ତି କେବେକେବେ । ହଠାତ୍ ପାଟିରୁ ବାହାରି ପଡେ, ଆଃ, ଉଃ ।

କାବୁଲି ମହାନ୍ତି ମୋ ସାମନାରେ ଯେତେବେଳେ ବଡ ପାଟିରେ ଚିତ୍କାର କରେ, ମୋତେ ଲାଗେ ବାଲି ଭିତରେ ମୋ ଗୋଡ ରଗଡି ହୋଇ ଯାଇଛି ।

ଅବଶ୍ୟ ସେ କେବେକେବେ ଏମିତି ପାଟି କରେ; କାରଣ ବର୍ଷକର ନଅମାସରୁ ଅଧିକ ତା କୁର୍ସିଟି ନିଷ୍ଠେତ ହୋଇ କାଉଣ୍ଟରକୁ ଚାହିଁଥାଏ । ଧୂଳିର ଏକ ମୋଟା ଆସ୍ତରଣ ଭିତରେ ସରୁ ସରୁ ଲାଇଲନ୍ ସୂତାଗୁଡିକ ହଜି ଯାଇଥାନ୍ତି ।

ବର୍ଷକର ଯେଉଁ ତିନିମାସ ତାର ସେହି ଡିମାଡିମା ଆଖି ଚଉକି ବେଞ୍ଚ ଉପରେ ଘୂରେ, ସେତକରେ ଲାଗେ ସବୁ ଉଦ୍ଭମାନେ ଯେମିତି ହଠାତ୍ ଚଳପ୍ରଚଳ କରିବାକୁ ଆରମ୍ଭ କରିଛନ୍ତି ।

ତାର ଆସିବା ଓ ଯିବା ନିରବତା ମଧ୍ୟରେ ହଠାତ୍ ଭୟଙ୍କର ଝଡର ଭୟ ସୃଷ୍ଟି କରେ ।

କାବୁଲି ମହାନ୍ତି ଥିଲା ମୋର ସହକର୍ମୀ ଓ ସହଯୋଦ୍ଧା । ଜୀବନର ବହୁ ପଥରେ ସେ ଚାଲିବା ବେଳେ କେତେ ଅଜଣା ବାଟୋଇଙ୍କୁ ହୁଏତ ବାଟ କଢାଇଥିବ, କିନ୍ତୁ ମୋର ସହକର୍ମୀ ଭାବରେ ଯୋଗ ଦେଇ, ସେ ମୋ ଦେଖା ବାଟରେ ଚାଲିବାକୁ ପସନ୍ଦ କରିଥିଲା । କେବେକେବେ ବାଟରେ ଢିମା କଣ୍ଟାର ଅସୁମାରୀ ଭିଡ । ସବୁ ତା ହାତର ଖେଳ ।

ମୋତେ ଜଣାପଡେ । ମୁଁ ମୋ ମୁହଁ ଉପରେ ନାଲି ଆସ୍ତରଣ ନ ଆଣି ଧଳା ଧଳା ଦାନ୍ତକୁ ତାକୁ ଦେଖାଇଦିଏ ।

ନେଉଳିଛାଉଳି ହୁଏ । ନିଜ ହାତରେ ଢିମାଗୁଡିକୁ ଉଠାଏ । ଏପଟେ ସେପଟେ ଫିଙ୍ଗେ । ବହେ ଗାଳି କରେ, ମନକୁ ମନ । ଅବଶ୍ୟ ହଠାତ୍ ନିରୀହ ଠେକୁଆ ତା ସାମନାରେ ଚାଲିଗଲେ, ତା ଦୁଃଖ କହିଲେ ନ ସରେ ।

ସେଇ କାବୁଲି ମହାନ୍ତି । ଜଟଣି ସହରରେ ନାମଜାଦା । କ୍ଷମତା ପାଗଳ ମାନଙ୍କୁ ଗାଦିସୀନ କରି ପାରୁଥିବାର ମଣିଷ । ପଛରେ ଲୋକେ ଡାକନ୍ତି ଦାଦା ।

ସେ ଯେ ଦାଦା ଏକଥା ମୋତେ ଜଣାଥିଲା । କିନ୍ତୁ ମୋ ପାଖରେ କିଛି ଜାଣିନଥିବା ଅବୋଧ ବାଳକଟିଏ । ମୋର କୃତ୍ରିମ କ୍ରୋଧରେ ତା ଆଖିରୁ ହସ ଝରିପଡେ । କି ଯେ ସେ ହସ । ବୃଦ୍ଧ ବୟସରେ ଜନ୍ମିତ ସାନଭାଇର ବଡଭାଇ ନିକଟରେ ସମ୍ପୂର୍ଣ୍ଣ ସମର୍ପିତ ଭାବ ।

ଦାଦାମାନଙ୍କ ଗହଣରେ ସେ ମଦମତ୍ତ ହସ୍ତୀ । ତା ହାତରେ ବନ୍ଧୁକ ନଥାଏ, ଖଣ୍ଡା ତରୁଆଲ ବି ନୁହେଁ । ତାର ବଡ ପାଟିର ଚିତ୍କାରରେ ସବୁ ଯେମିତି ବଦଳିଯାଏ । ସମସ୍ତଙ୍କୁ ବଶୀଭୂତ ମନ୍ତ୍ରରେ ବଶ କରି ପକାଏ ।

ଦାଦାମାନଙ୍କ ଆଡ୍ଡା ଜମେ ରାଜଧାନୀ ଛକରେ ଥିବା ପଶୁପାଳନ ହୋଟେଲରେ । ଟେବୁଲ ଚାରିକଡେ ଅତୃପ୍ତ ନୟନମାନେ ଚାହିଁଥାନ୍ତି ବଡା ହୋଇଥିବା ଖଣ୍ଡଖଣ୍ଡ ମାଂସ ଆଡେ । ହାତ ଟେକି ଧରୁଥାଏ କାଚଗ୍ଲାସ ପୂର୍ଣ୍ଣ ପାନୀୟକୁ ।

ସରଦାରଙ୍କର ଦେଖା ନଥାଏ କିନ୍ତୁ ତାଙ୍କ ଲମ୍ବା ପଞ୍ଜାବୀରୁ କାଗଜଗାଣ୍ଠି ଏ ମାନଙ୍କ ନିକଟକୁ ରୀତିମତ ପହଞ୍ଚୁ, ଏମାନଙ୍କ ତୃଷାର ସହାୟକ ଭୂମିକା ନିଭେଇବାରେ କେବେ ଭୁଲ କରେନା ।

ସେଇ କାବୁଲି ମହାନ୍ତି । ତା ଶରୀରଟା ନିର୍ଘାତ ପଡି ରହିଛି । ପାଖରେ ତା ରକ୍ତ ମାଂସର ପ୍ରତୀକ ମାନେ । ମୋ ଆଖି ସାମ୍ନାରେ ସେ ମୋତେ ବିଦ୍ରୂପ କରି ଚାଲିଗଲା । ମୋତେ କହୁଥିଲା, କୁଆଡେ ଥିଲା ଆପଣଙ୍କର ଦର୍ଶନ ? ମୋ ପରି ଲୋକମାନଙ୍କର ରାସ୍ତାକୁ ଠିକ୍ କରି ପାରିଲେ ନି ? ମୋତେ ଏତେ ଭୟ ନା ଘୃଣା ନା ବିଦ୍ୱେଷ ନା ପ୍ରତିଦ୍ୱନ୍ଦୀ ବୋଲି ଗ୍ରହଣ କରିଥିଲେ ? ମୁଁ କଣ କେବଳ କାବୁଲି ମହାନ୍ତି ନଥିଲି ଆପଣଙ୍କ ପାଖରେ ?

ଡିମାଡିମା ଆଖିରୁ ସେଇ ପ୍ରଶ୍ନ ମୋତେ ବିବ୍ରତ କରୁଥିଲା । ହାତରେ ଧରିଥିବା କୋକାକୋଲାର ପାନୀୟ ମୋ ଓଠକୁ ଆଦୌ ସ୍ପର୍ଶ କରିନଥିଲା ।

କାବୁଲି ମହାନ୍ତିର ଶୂନ୍ୟ ଶରୀର ଖଟ ଉପରେ ଚିତ୍ କରି ଶୋଇଥିଲା । ମୁଁ ବସିଥିଲି ତାର ଖଟ କଡରେ । ନିର୍ବାକ ଓ ଜଡବତ୍ ।

ତା ସ୍ତ୍ରୀର ସକ୍‌ସକ୍ କାନ୍ଦ ବନ୍ଦ ହୋଇ ଯାଇଥିଲା । ଉଦାସ ଆଖିରୁ ଝରୁଥିଲା ଲୁହ । "ବୁଝିଲେ ଭାଇନା ! ସେ ଆପଣଙ୍କୁ ଭାରି ଭଲ ପାଉଥିଲେ । ଯେମିତି ଆପଣ ତାଙ୍କର ଜନ୍ମିତ ବଡ ଭାଇ । ବହୁ ସମୟରେ ଆପଣଙ୍କ କଥା କହିବେ । ନିଜକୁ ନିଜେ ଭର୍ତ୍ସନା କରିବେ । ଆପଣଙ୍କ ଆଦର୍ଶର କାଣିଚାଏ ନେଇ ବାକିଥିବା ଜୀବନକୁ ସେଇ ବାଟରେ ଚଳେଇବାକୁ ଚାହିଁବେ ।

ଦିନେ ଦିନେ ଶୂନ୍ୟକୁ ଚାହିଁ କହିବେ, ଭାଇନାଙ୍କ ସାମନାକୁ ଚାଲିଗଲେ କେମିତି ଡରଲାଗେ । ଭୟ ଅପରାଧୀଟିଏ ପରି । ଭାଇନାଙ୍କ ମା ଚାଲିଗଲେ । କେତେ ଦୁଃଖ ତାଙ୍କର । ତଥାପି ସେ କେତେ ସରଳ । ଆମ ପାଇଁ ସମୟ ଦେବାକୁ, ଘରଦ୍ୱାର ପିଲାଛୁଆଙ୍କୁ ପଛରେ ପକେଇ ଯିବେ ।"

ମୋର ମନେ ପଡୁଥିଲା କାବୁଲି ମହାନ୍ତିର ଅଦିନିଆ ମେଘ ପରି କଟକ ବଡ ଡାକ୍ତରଖାନାରେ ପହଞ୍ଚିବା । କାବୁଲି ମହାନ୍ତିର ଅଦିନିଆ ମେଘ ପରି କଟକ ଯାଇ କହିବା, "ମା ! ଆପଣ ଭଲ ହୋଇ ଯିବେ । ଆପଣ ଭଲ ହୋଇ ଯିବେ । ଆମେ ଆପଣଙ୍କୁ ରକ୍ତ ଦେବୁ । କେତେ ପୁଅ ଆପଣଙ୍କର । ସମସ୍ତେ ରକ୍ତ ଦେବେ ।"

ରକ୍ତ ଦେଇଥିଲା ମୋ ବୋଉକୁ ସେ । ବୋଉ ଆମକୁ ଛାଡି ଚାଲିଗଲା । ମୁଁ ଧାରୁଆ ରହିଗଲି କାବୁଲି ମହାନ୍ତିର । ଆପଣା ଭିତରର ମଣିଷଟି । ମୋଠାରୁ ମୋ ଆଖି ସାମ୍ନାରେ ଚାଲିଗଲା । ମୁଁ ତାକୁ ଅଟକାଇ ପାରିଲି ନାହିଁ । ଅଟକାଇବାର ଚେଷ୍ଟା ମଧ କଲିନି ।

ମୁଁ କଣ କୃତଜ୍ଞ ନା କୃତଘ୍ନ ?

କାନକୁ କାନ ହୋଇ କଥାଟା ଚାରିଆଡେ ରାଷ୍ଟ୍ର ହୋଇ ଯାଇଥିଲା । ଧାଡି ଲାଗିଥିଲା ଦାଦାମାନଙ୍କର । ସହକର୍ମୀ ମାନଙ୍କର । ପରିବାରର । ସବୁ ମୁହଁଗୁଡିକଶୁଖିଲା । ଖରାଦିନେ ଫାଟି ଯାଉଥିବା ଭୂଇଁ । ଆଖି ଡିମାଡିମା । ଲୁହ ନଥିଲା । ନିରବତା, ଅଖଣ୍ଡ ନିରବତା ।

ଦାଦାଙ୍କର ସରଦାର ଆସିଲେ । ସରଦାର ମାନେ ଆସିଲେ ଯେମିତି ହଇଚଇ ପଡ଼ିଯାଏ ସେମିତି ଖୋଟେ ହଇଚଇ । ସରଦାର କୁରେଶ ସାମନ୍ତରାୟ ।

ଷ୍ଟେସନୱାଗନ ଗାଡ଼ିଟା ଲମ୍ବା ନର୍ଦ୍ଦମା ଉପର ଦେଇ ଘୁଁ କିନା ଲାଗିଗଲା କାବୁଲି ମହାନ୍ତି ଦୁଆର ମୂହଁରେ । କଳା ପାଇଜାମା, କଳା ସାର୍ଟ ଶୋକ ପାଳନର ପରିଧେୟ । ହାତରେ ଫୁଲତୋଡ଼ା । କଳାବାଦଲ ପୂର୍ଣ୍ଣ ହୋଇ ଯାଇଛି ମୁହଁ ଉପରେ ।

ସଦ୍ୟ ଗୋଲାପ ଓ ରଜନୀଗନ୍ଧାର ସରୁ ଗୋଛାଟାଏ । ଶ୍ରଦ୍ଧା ଓ ଭଲ ପାଇବାର ସଙ୍କେତ କାବୁଲି ମହାନ୍ତିକୁ । ନା, କାବୁଲି ମହାନ୍ତିର ନିର୍ଜୀବ ଶରୀରକୁ । ଜିଅଁନ୍ତା କାବୁଲି ମହାନ୍ତି ହାତରେ ଧରାଉଥିଲେ ସୁନ୍ଦର କାଚଗ୍ଲାସ ।

ନିର୍ଜୀବ କାବୁଲି ମହାନ୍ତିକୁ ଦେବେ ରଜନୀଗନ୍ଧା । ଭିତରକୁ ପଶିଗଲେ ସରଦାର କୁରେଶ ସାମନ୍ତରାୟ । ବାହାରକୁ ବାହାରି ଆସି ଚାହିଁଲେ ଚିହ୍ନା ଅଚିହ୍ନା ଅନେକ ମୁହଁକୁ । ତାଙ୍କୁ ଲାଗିଲା ଯେମିତି ସମସ୍ତେ ତାଙ୍କର ଚିହ୍ନା । ସେ ଯେ ସରଦାର ।

ପକେଟରୁ ଖସ୍ ଖସ୍ କରି କାଗଜ ଗାଣ୍ଡି ବାହାରିଲେ । ନେ ବେ ! କଟଣୀ ବଜାରରୁ ନେଇଆସ ରଜନୀଗନ୍ଧାର ଢେର ସାରା ପାଖୁଡ଼ା । ଗଡ଼ା ଟୋକା ଗୁଡ଼ାକ ଚାହୁଁ ଚାହୁଁ ଚାଲି ଯାଉଛନ୍ତି ।

ଯେତେ କହିଲେ କଣ ହେବ । ନାଲି ପାଣିର ସବୁ କରାମତି ।

ଚିଇ ମାଛକୁ ଝାମିବା ପରି କାଗଜ ଗାଣ୍ଡି ଝାମ ଖାଇ ଅନ୍ୟଜଣେ ପାଖ ଦାଦାଙ୍କ ପକେଟରେ ନିଜକୁ ଲୁଚାଇ ଦେଇଥିଲେ ।

ସରଦାରଙ୍କ ଗୋଡ଼ତଳେ ବିଡ଼ି ବିଡ଼େଇ ହୋଇ ଟୋକାଟେ ଧୂଳିରେ ଲୋଟୁଥିଲା । ନର୍ଦ୍ଦମା ପାଣିରେ ସାଲୁବୁବାଲୁବୁ ହେଉଥିବା ପୋକମାନଙ୍କ ପରି ।

ମୁଁ ଚାହିଁ ରହିଥିଲି ସରଦାର ଆଡ଼େ । କାବୁଲି ମହାନ୍ତିର ନିର୍ଜୀବ ଶରୀର ମୋତେ ଯେପରି ଥଟା କରି କହୁଥିଲା, “ଦେଖିଲେ ତ ବନ୍ଧୁତା; ଆପଣ କିଏ କି ମୋର ? ଆପଣଙ୍କ ବାଡ଼ିରେ କଣ ଗୋଲାପ ଫୁଲ ନ ଥିଲା ? ଆପଣ ସରଦାର ଦେଇଥିବା ମୋର କାଚଗ୍ଲାସକୁ ଭାଙ୍ଗି ଦେଇଥିଲେ ନା ? ସେତେବେଳେ ମୁଁ ଥିଲି କାବୁଲି ମହାନ୍ତି । ସେ ମୋତେ ନୂଆ ଗ୍ଲାସ ଦେଲେ । ଗ୍ଲାସ ପରେ ଗ୍ଲାସ । ଆପଣ ଭାଙ୍ଗି ପାରିଲେ ? ଆପଣଙ୍କ ଶକ୍ତିଥିଲା ଭାଙ୍ଗିବାକୁ ?

ସରଦାର କୁରେଶ ସାମନ୍ତରାୟ ସର୍ବଶକ୍ତିମାନ । ସେ ହିଁ କେବଳ ସୃଷ୍ଟି କରି ପାରନ୍ତି କାବୁଲି ମହାନ୍ତି, ଛଗୁଲି ମହାନ୍ତି, ବଗୁଲି ମହାନ୍ତି, ମେଣ୍ଢାସିଂହ, ଛାଗଳ ସିଂହ, ଛୁଆଳ ସିଂହ ଇତ୍ୟାଦିଙ୍କୁ । ପ୍ରତ୍ୟେକ ଦିନ ସେମାନଙ୍କୁ ନୂଆ ନୂଆ ଗ୍ଲାସ ଦେଇ ପାରନ୍ତି । ଦେଇ ପାରନ୍ତି ସଦ୍ୟ ଗୋଲାପ ପାଖୁଡ଼ା ଓ ରଜନୀ ଗନ୍ଧାର ସ୍ତବକ । ସେ ଆମର ସରଦାର । ଆମକୁ ଗଢ଼ିଲେ, ଆମକୁ ଭାଙ୍ଗିଲେ, ଆମକୁ ନର୍ଦ୍ଦମା ଚିହ୍ନେଇଲେ, ନର୍ଦ୍ଦମା ବନେଇଲେ, ନର୍ଦ୍ଦମାରେ ବଞ୍ଚିବାକୁ ଦେଲେ, ଆମର ବଂଶ ବଢେଇଲେ ।

ଆପଣ ବେକୁବ୍ ବନ୍ଧୁଟିଏ । ଦୟା ଓ ଅନୁକମ୍ପା ପାଇବାର ଯୋଗ୍ୟ ବନ୍ଧୁଟିଏ । ଶାଗ

ସିଝାଇ ପାରୁନଥିବା ବନ୍ଧୁଟିଏ ।"

ସରଦାର କୁରେଶ ସାମନ୍ତରାୟ ଉଠି ଛିଡା ହେଲେ । ଗୁରୁ ଗମ୍ଭୀର କଣ୍ଠରେ କହିଲେ, "ଯାଉଛି, ତେଣ ଶାରା ଫୁଲ ନଦି ଟ୍ରକ୍‌ରେ ନେଇଯିବ ମହୋଦଧି ତଟକୁ । ଅତ୍ୟନ୍ତ ପକ୍ଷେ ଆତ୍ମାଟା ଶାନ୍ତି ପାଇବ ତ ।"

ଷ୍ଟେସନୱାଗନର ଶବ୍ଦ ଘଁ ଘଁ ହେଲା । ସରଦାର କୁରେଶ ସାମନ୍ତରାୟ କାବୁଲି ମହାନ୍ତିକୁ ଛେଉଣିଆ କରି ଚାଲିଗଲେ । ପୁଣି ତୋଳିବେ ନିଜ ବଗିଚାରୁ ସଯତ୍ନ ବର୍ଦ୍ଧିତ ଗୋଲାପ କଢି ମାନଙ୍କୁ । ରଜନୀଗନ୍ଧାର ଡେମ୍ପକୁ । ସ୍ତବକ ହାତରେ ଧରି ନିର୍ଜୀବ ଦାଦାମାନଙ୍କୁ ଦେବାକୁ ଷ୍ଟେସନୱାଗନ ଚଢି ଯିବେ ।

କାଚଗ୍ଲାସର ଟୁଂ ଟାଂ ଓ କାଗଜ ଗାଡ଼ିଙ୍କର ଖସ୍‌ଖସ୍ ଶବ୍ଦକୁ ସାମୟିକ ଭାବରେ ପଛରେ ପକେଇ ଠା ଠା ନିଜର ବିକୃତି ପ୍ରକାଶ୍ୟରେ ଓ ଅପ୍ରକାଶ୍ୟରେ କହୁଥିବେ, "ଗଜା ଟୋକାଗୁଡାକ ଚାହୁଁ ଚାହୁଁ ଚାଲିଗଲେ ।"

ନିର୍ଜୀବ କାବୁଲି ମହାନ୍ତି ଶରୀର ପାଖରେ ମୁଁ ବସିଥିଲି । ଡାକ୍ତର ବଂଧୁ ହଲାଇ ଦେଇ କହିଲେ, "ଆପଣ କଣ ପାରିବେ ଏମାନଙ୍କୁ । ଏମାନେ ନର୍ଦ୍ଦମା ସୃଷ୍ଟି କରିବେ । ପୋକମାନଙ୍କ ସାଲୁବାଲୁ ହୋଇ ବଞ୍ଚିବାର ଓ ବଂଶ ବୃଦ୍ଧି କରିବାର ବାଟ ତିଆରି କରିବେ । ନିଜ ନିଜର ଉପ୍‌ସିତ ଇଚ୍ଛା ଓ ଆକାଂକ୍ଷା ମାନଙ୍କର ମହାଦ୍ରୁମ ସୃଷ୍ଟି କରି, ଭସାମେଘ ପରି ବିଞ୍ଚିଦେବେ ଫୁଲର କେଇ ପାଖୁଡା । କାବୁଲି ମହାନ୍ତି ପରି ଅସଂଖ୍ୟ ନିଜ ନିଜକୁ ସେଇ ନର୍ଦ୍ଦମା ଭିତରେ ପାଇବେ ନିଜ ଅଜାଣତରେ ।"

ମୁଁ ଉଠିଲି । ଚାହିଁଲି କାବୁଲି ମହାନ୍ତିକୁ । ଇଚ୍ଛା ହେଲା ପ୍ରଶ୍ନ କରିବାକୁ ଅନେକ ପ୍ରଶ୍ନ । ଯେଉଁ ପ୍ରଶ୍ନର ଉତ୍ତର ମୁଁ ଏଯାଏ ପାଇନି । ଅବଶ୍ୟ କାହାକୁ ଏଯାଏ ସେ ପ୍ରଶ୍ନ ପଚାରି ପାରିନି । ପଚାରିବାର ଶକ୍ତି ମଧ ମୋର ନାହିଁ । ସର୍ବଶକ୍ତିମାନ ଲୋକମାନଙ୍କୁ କିଏ ପ୍ରଶ୍ନ କରିପାରେ ? କାବୁଲି ମହାନ୍ତିର ନିର୍ଜୀବ ଶରୀରଟା ସିନା ପଡି ରହିଛି କଣ ସେ ସର୍ବଶକ୍ତିମାନ ନଥିଲା କି ଛଟଣୀ ବଜାରରେ ।

କୁରେଶ ସାମନ୍ତରାୟର ଆଖିର ଇଶାରାରେ ଛଟଣୀ ବଜାରକୁ ଧ୍ୱଂସ ସ୍ତୁପରେ ପରିଣତ କରିବାର ଶକ୍ତି ଓ ସାମର୍ଥ ତାର ନଥିଲା କି ?

କୋକେଇ ବନ୍ଧା ସରିଥିଲା । ରାମ ନାମ ସତ୍ୟ ହେ, ରାମ ନାମ ସତ୍ୟହେ କହି ହାତରେ ଧରିଲି ତାର ସେଇ ଓଜନିଆ ମୁଣ୍ଡଟାକୁ ।

ମହୋଦଧି କୂଳେ ନିଆଁର ପ୍ରଚଣ୍ଡ ଉତ୍ତାପରେ ପୋଡି ପାଉଁଶ ହୋଇଗଲା ସେହି ଶରୀର । କାବୁଲି ମହାନ୍ତି ଆଉ ନାହିଁ । ଅନେକ କାବୁଲି ମହାନ୍ତି ଛଟଣୀ ବଜାରଠାରୁ କାହିଁ କେତେଦୂର ହିମାଳୟ ପର୍ଯ୍ୟନ୍ତ ନର୍ଦ୍ଦମାରେ ପୋକପରି ସାଲୁବାଲୁ ହେଉଛନ୍ତି ।

ମୁଁ ମହୋଦଧିର ସ୍ନିଗ୍ଧ ହାୱା ସହିତ ବାଲି ଭିତରେ ରସ୍‌ରସ କରି ଚାଲୁଥିଲି । ଖୋଜୁଥିଲି କାବୁଲି ମହାନ୍ତିକୁ । ଏ ପୃଥିବୀରେ ଜନ୍ମିଥିବା ମଣିଷଟିଏକୁ ।



# ନାମ ଫଳକ

ବଂଧୁ ଜ୍ୟୋତିଷ ଆସିବେ ବୋଲି ମୁଁ ତାଙ୍କୁ ଅପେକ୍ଷା କରି ଦିନ ଯାଇ ରାତିହେଲା । ତଥାପି ତାଙ୍କର ଦେଖା ନାହିଁ । ଟେବୁଲ୍‌ରେ ବସି ମୁଁ ବାରମ୍ବାର ଘଣ୍ଟାକୁ ନିଠେଇ ନିଠେଇ ଚାହିଁଲି । ମିନିଟ୍ କଣ୍ଟା ସେକେଣ୍ଡ କଣ୍ଟାର ଟିକ୍‌ଟିକ୍ ଚାଲିବା ପରେ ଧୀରସ୍ଥିର ଭାବରେ କେମିତି ଆଗକୁ ମାଡି ଚାଲୁଛି, ମୁଁ ତାହା ଲକ୍ଷ୍ୟ କଲି । ପିଲାଦିନ ପ୍ରାଥମିକ ସ୍କୁଲରେ ପଢିବା ବେଳେ ଘଣ୍ଟାକ ଷାଠିଏ ମିନିଟ୍, ମିନିଟକୁ ଷାଠିଏ ସେକେଣ୍ଡ ଏକଥା ଜାଣିଥିଲି । ବହୁଦିନ ହାତରେ ଘଣ୍ଟା ପିନ୍ଧୁଛି କିନ୍ତୁ କେବେ ଲକ୍ଷ୍ୟ କରି ନଥିଲି ଟିକ ଟିକ କରି ସେକେଣ୍ଡ କଣ୍ଟା କେମିତି ଚାଲେ ଓ ମିନିଟ କଣ୍ଟା ଆପଣାଛାଏ ଉପରକୁ ଉପରକୁ ଉଠିଯାଇ ଘଣ୍ଟା କଣ୍ଟାକୁ ଠେଲିଦିଏ । ଏହାକୁ କହନ୍ତି ସମୟ ।

ସେଦିନ ବଂଧୁଙ୍କୁ ଅପେକ୍ଷା କରି ମୋର ପାଠ ପଢିଥିବା ଜ୍ଞାନର ପରୀକ୍ଷା ହୋଇଗଲା । ଜୀବନ କଣ ଏହି ସମୟ ଚକ୍ରର ଅଂଶ ? ହଠାତ୍ ଏହି ଦର୍ଶନ ସଂପର୍କରେ ବସି ଚିନ୍ତାକଲି । ଆଗରେ ପଡିଥିଲା ସେଦିନର ଖବର କାଗଜ ବିକ୍ଷିପ୍ତ ଭାବେ । ତାକୁ ନିଜ ସହଜାତ ଗୁଣ ନେଇ ଏକାଠି କଲି । ସଜାଡି ପଢିବାକୁ ଆରମ୍ଭ କଲି ।

ଖବର କାଗଜ ପଢିବାର ତରିକା ଜାଣିବା ଦରକାର । ଦିନେ ମୋର ସହଯୋଗୀ ବଂଧୁ ଆଶିଷ ଏକଥା କହିଥିଲେ । ମୁଁ ତାଙ୍କ କଥା ଶୁଣି ବଲ ବଲ କରି ଚାହିଁଲି । ଆଶିଷ ଖବର କାଗଜରେ କାମ କରେ ନାହିଁ ଅଥଚ ଖବର କାଗଜର ପଢିବା ସଂପର୍କରେ ଏମିତି ତତ୍ତ୍ୱ କିପରି କହି ପାରୁଛି, ହଠାତ୍ ଏଇ ଭାବନା ମୋ ମୁଣ୍ଡକୁ ଯୁଟିଲା ।

ମୁଁ କଣ ଜଣେ ଚିନ୍ତାଶୀଳ ବ୍ୟକ୍ତି କି ?

ମୋ ଚିନ୍ତାରେ ନାନାଦି ବିଭ୍ରାଟ ଦେଖାଦେଲାଣି ବୋଲି ମୋର ଶୁଭେଚ୍ଛୁ ଦୁର୍ଗାବାବୁ

ମୋତେ ବସାଇ ଚା ପିଇବାବେଳେ କହିଲେ । ମୁଁ ତାଙ୍କୁ ଚା ଦେଇଥିଲି । ଭାବିଥିଲି ମୋତେ ପ୍ରଶଂସା କରିବେ ଅଥଚ ସେ ମୋର ନିନ୍ଦା କରିବାକୁ ଆରମ୍ଭ କଲେ । କିନ୍ତୁ ଦୁର୍ଗାବାବୁ ସେମିତିକା ମଣିଷ ନୁହଁନ୍ତି ।

କଟକ ଭୁବନେଶ୍ୱର ରାସ୍ତା ଆଜିକାଲି ଭାରି ଭିଡ । ଲମ୍ବା ଲମ୍ବା ଗାଡିର ଧାଡି କାର, ବସ, ଟ୍ରକ । ଏତେ କାର ଲୋକେ କେମିତି କିଣିଛନ୍ତି ଯେ ? ଟଙ୍କା ଗୁଡା ହାଉଯାଉ ହେଉଛି କି ?

ଟଙ୍କା ହାଉଯାଉ ନହେଉଥିଲେ ଖବରକାଗଜରେ ଏତେ ସ୍କାମ କାହିଁକି ? ଦୁର୍ନୀତିର ଲମ୍ବା ତାଲିକା । କୋଟି କୋଟି ଟଙ୍କାର ସ୍କାମ ସାର, ଚୋକଡ, ଚିନି, ଟେଲିଫୋନ, ବନ୍ଧୁକ-ସବୁଠି କିକ୍‌ବ୍ୟାକ୍ ଘର ଭିତରେ ମଳାମଳା ପିମ୍ପୁଡି ଚାଲିବା ପରି ଦେଶରେ କିକ୍‌ବ୍ୟାକ୍‌ର ଏଜେଣ୍ଟ ଭର୍ତ୍ତି ହୋଇଗଲେଣି ।

ଟଙ୍କାର ହରିଲୁଟ୍ ହରେ ହରେ । ଯେତେ ହରି ପାରିବ ।ରାଧେ ରାଧେ ତୁମର ଆମର ଅଧେ ଅଧେ ।

ପଲିଟିସିୟାନ-ବ୍ୟୁରୋକ୍ରାଟ-ବିଜିନେସ୍‌ମ୍ୟାନ୍-ନେକ୍‌ସସ୍ । ରାଜନୀତିତ ଏବେ ମାଫିଆଙ୍କ କବଜାରେ । କେଡେ ଚମତ୍କାର ଶବ୍ଦ ସବୁ ଏକାଠି ହୋଇଛନ୍ତି । ଶବ୍ଦମାନେ ଏକାଠି ହେବାକୁ ଭଲପାନ୍ତି । ଶବ୍ଦବ୍ରହ୍ମ ।

ବନ୍ଧୁ ଜ୍ୟୋତିଷଙ୍କର ଦେଖାନାହିଁ । ଚାହିଁବାର ପୁଣିତ ସମୟ ଥାଏ । ଅପେକ୍ଷା କରି କରି ଚାରି ପାଞ୍ଚ ଥର ଚା ପିଆ ହେଲାଣି ଟାଟା ଟିର ସ୍ୱାଦ ବେଶ୍ ବଢ଼ିଆ ଚିଟା ।

ଟାଟା ଟିର ଉଲଫା ସହିତ କାଳେ ସଂପର୍କ ରହିଚି । ଏ ନେଇ ଚାରିଆଡେ ବହୁତ ହଇଚଇ ବଡବଡ ବ୍ୟବସାୟୀମାନଙ୍କ ଅକ୍ତିଆରରେ ରାଜନୀତି ।

ମୋ ମନରେ ଏତେ କଥା ଉଠୁଛି କାହିଁକି ? ମୁଁ ନେତା କି ? ମୁଁ କଣ ଜଣେ ଦାର୍ଶନିକ, ନା ଜଣେ ଶିକ୍ଷାବିତ୍ !

ମୁଁ ସାଧାରଣ ମଣିଷଟିଏ । ବଞ୍ଚିବାପାଇଁ ଦିନରାତି ଖଟୁଛି । ମୋ ସ୍ତ୍ରୀକିନ୍ତୁ ମୋ ଉପରେ ସନ୍ତୁଷ୍ଟ ନୁହନ୍ତି । ଏପରିକି ମୋ ପିଲାମାନେ । ଏବେ ଏବେ ସାଂବାଦିକତା ପାସ୍ କରିଥିବା ମୋ ବଡପୁଅ ମୋର ବୁଦ୍ଧିବୃତ୍ତି ନାହିଁ ବୋଲି ମୋ ମୁହଁ ଉପରେ ରୋକ୍‌ଠୋକ୍ କହିଦେଲା ।

ମୋ ସ୍ତ୍ରୀ ମୋତେ ବାରମ୍ବାର ଚେତେଇ ଦେଲେଣି ମୁଁ ତାଙ୍କୁ ସୁଖରେ ରଖିନାହିଁ । ସେ ଅନ୍ୟ କେଉଁଠି ଓ କାହାକୁ ବାହା ହୋଇଥିଲେ ସୁଖରେ ଥାଆନ୍ତେ ।

ତାଙ୍କର ଏ ଅଭିଯୋଗର ଉତ୍ତର ମୋ ପାଖରେ ନାହିଁ । ମୁଁ କିନ୍ତୁ ତାଙ୍କୁ ଏଯାବତ୍ ଗାଳି, ମାଡ ଦେଇନି, ମଦ ପିଇ ତାଙ୍କ ସହିତ ଖରାପ ବ୍ୟବହାର ଦେଖେଇନି । ତାଙ୍କ ବାପଘର ମାନେ ମୋ ଶ୍ୱଶୁର ଘର ଲୋକମାନଙ୍କ ସଂପର୍କରେ କୌଣସି ମତାମତି ଦେଇନି । ତାଙ୍କ ଭାଇମାନଙ୍କୁ ଅବଜ୍ଞା କରିନି । ବର୍ଷକୁ ଅନ୍ତତଃ ପକ୍ଷେ ଥରେ ତାଙ୍କୁ ବାପ, ମା, ଭାଇ, ଭାଉଜଙ୍କୁ ସଙ୍ଗୋଳି ଆସିବାକୁ ପଠାଇଛି । ଯୌତୁକ ନ ଦେବା ବାବଦରେ ମୁହଁ ଖୋଲିନି । କେବେ ଭୁଲ୍‌ରେ ସୁଦ୍ଧା

ଛାତପତ୍ର ନାଁ ଗନ୍ଧ ଧରିନି । ତାଙ୍କ କଥା ମାନି ସନ୍ଧ୍ୟା ପୂର୍ବରୁ ଘରକୁ ଫେରୁଛି । ମୋ ସ୍କୁଟର୍‌ରେ ଅନ୍ୟ ମହିଳା ବସିଥିବାର କେହି ଦେଖିନାହିଁ ବା କହି ପାରିବ ନାହିଁ । ତଥାପି ସେ ମୋତେ ବାରମ୍ବାର ତାଗିଦ୍ କରିବା ପରି କହୁଛନ୍ତି, ମୁଁ ତାଙ୍କୁ ସୁଖରେ ରଖିନି ।

ଆଜିକାଲି ନାରୀ ନିର୍ଯ୍ୟାତନା ବଢି ଚାଲିଛି । ନାରୀଧର୍ଷଣ, ବଧୂହତ୍ୟା, ଯୌତୁକହତ୍ୟା, ବଳପୂର୍ବକ ପାଶବିକ ଅତ୍ୟାଚାର, ନାବାଳିକା ପ୍ରତି ଅତ୍ୟାଚାର ପ୍ରତିଦିନ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଘଟୁଛି ।

ଏଥିରୁ କେହି ବାଦ ପଡୁନାହାନ୍ତି । ମନ୍ତ୍ରୀ, ଏମ.ଏଲ.ଏ ଅଫିସର ସବୁ ଏକା ଡଙ୍ଗାର ଯାତ୍ରୀ । ଏବେ ବଳାତ୍କାରର ବ୍ୟୁହରେ ରାଜ୍ୟର ସର୍ବୋଚ୍ଚ ଆଇନ ରକ୍ଷକ । ଏଥି ପାଇଁ କେତେ ସଭା ସମିତି, ବିକ୍ଷୋଭ, ପ୍ରତିବାଦ ଓ ବିବୃତି । ମୋ ସ୍ତ୍ରୀଙ୍କର ସାହସ ମଧ ବହୁତ ବଢିଗଲାଣି । ସେ ଅନ୍ୟମାନଙ୍କର ପରି ଦୁର୍ଗାରୂପ ଧାରଣ କରିଛନ୍ତି ଯେମିତି ଦାନବଦଳନ କରିବେ ।

ମୁଁ ବିକଳରେ ଦେବୀ ଦୁର୍ଗାଙ୍କ ସ୍ତୋତ୍ର ପଢୁଛି । ଯାଦେବୀ ସର୍ବଭୂତେଷୁ... । ବଂଧୁ ଜ୍ୟୋତିଷଙ୍କର ଦେଖାନାହିଁ । ସାଙ୍ଗହୋଇ ମାକଡୋଏଲମଦ କଂପାନୀର ଡିପ୍ଲୋମାଟ୍ ଫୁଲ ହଙ୍ଗାମାକୁ ଦେଖିବାକୁ ଯାଇଥାନ୍ତୁ । ପପ୍ ସଂଗୀତ । ରଙ୍ଗୀନ୍‌ଦୁନିଆର ସଂଗୀତ । ତିନି ନମ୍ବର ପଡିଆରେ ଦର୍ଶକ ଥାଟପଟାଳି ମାରୁଥିବ ।

ମଦ, ବ୍ଲୁଫିଲ୍ମ, ପପ୍‌ସଂଗୀତ, ଷ୍ଟାର ଟି.ଭି ପରଦାରେ ଦେଖିବା କାଳେ ବାର୍ଣ୍ଣ ସଭ୍ୟତା । ଷ୍ଟାର ଟି.ଭି. ଚାରି ଆଡେ ମାଳମାଳ ଚାଳଘର ଉପରେ ବି ଶୋଭା ପାଉଛି ।

ଆମେ ସଭ୍ୟତା କହିଲେ କଣ ବୁଝୁ କେଜାଣି ? ସଭ୍ୟତା କଣ ଜଣ ଜଣକ ପାଇଁ ନା ସାମୂହିକ । ସଭ୍ୟତା ସମ୍ବନ୍ଧରେ ଜାଣିବାକୁ ହେଲେ ଇତିହାସ ପଢିବାକୁ ହେବ । ବିଶ୍ୱବିଦ୍ୟାଳୟ ସେମିନାର ଘରେ ବସି ଘାଣ୍ଟି ଚକଟି ହେବାକୁ ହେବ ।

ସେମିନାର ଟେବୁଲରେ ଅଧଇଞ୍ଚ ବହଳର ଧୂଳି । ଅଧାପକ ବଂଧୁ ସୂର୍ଯ୍ୟସେନ କହିଲେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଦେବାର ଯନ୍ତ୍ର, ଅଧୟନର କେନ୍ଦ୍ର ନୁହେଁ ।

ସତେକି !

ମୋ ମନଟା ଖଟା ହୋଇଗଲା । ମୋ ଏମ.ଏ ଡିଗ୍ରୀଟା ସେଇ ଯନ୍ତ୍ରରୁ ମିଳିଥିଲା । ସେତେବେଳେ କେହି ଅଧାପକ କହୁ ନଥିଲେ ବିଶ୍ୱବିଦ୍ୟାଳୟ ଗୋଟିଏ ଯନ୍ତ୍ର । ପାଠ ନପଢିଲେ ଡିଗ୍ରୀ ମିଳେନା ।

ଏବେ କଣ ଠିକ୍ ଓଲଟା ହୋଇଗଲାଣି କି ? ନଚେତ୍ ଛାତ୍ରଆନ୍ଦୋଳନ ହୁଅନ୍ତା କାହିଁକି ପରୀକ୍ଷା ଘୁଞ୍ଚାଇବା ପାଇଁ ? କପି କରିବା ଛାତ୍ର ଅଧିକାରର ଅର୍ନ୍ତଭୁକ୍ତ ହୋଇଗଲାଣି ବୋଲି ଛାତ୍ର ନେତାମାନ ନିର୍ବାଚନ ଭାଷଣରେ ଯେତେ ଜୋରରେ କହୁଛନ୍ତି, ସେତେ ବେଶି ଭୋଟ ।

ଏ ପର୍ଯ୍ୟନ୍ତ ବନ୍ଧୁ ଜ୍ୟୋତିଷଙ୍କର ଦେଖା ନାହିଁ । ମଧବିତ୍ତ କର୍ମଚାରୀଙ୍କର ପରିଚାଳକ ସେ । କେତେ ଦାୟିତ୍ୱ । ବୁଝିସାରିଲେ ସିନାବଂଧୁ ଦେଖା କରିବାକୁ ଆସିବେ । ସମୟ ଠିକ୍

କରୁଥିଲେ କାହିଁକି ?

ସମୟ । କାହାର ସମୟ ?ମୋର ନା ଆପଣଙ୍କର ନା ଅଫିସ୍‌ର ? ନିଜ କଥା ବୁଝିସାରିଲେ ବାକି କଥା ଦେଖିବାକୁ ସମୟ କାହିଁ ? ଦେଶସାରା କଣ ସମସ୍ତେ ନିଜ କଥା କେବଳ ବୁଝୁଛନ୍ତି ?

ମୁଁ ସତରେ ଗୋଟେ ବୋକା ଲୋକ । ବୋକା କହିଲେ ଠିକ୍ ହେବନି । ବରଂ କୁହାଯାଇପାରେ ପାଗଳ । ଚିନ୍ତା ବିଭ୍ରାଟ ଯୋଗୁଁ ପାଗଳ ।

କାମିନୀ, କାଞ୍ଚନ ।

ସୁନ୍ଦରୀ ନାରୀ ଓ ଅମାପ ଧନ ।

ଦେଶ ସାରା ନାରୀ ଓ ଧନ ନେଇ ତ ଚର୍ଚ୍ଚା । ସେଇଥିପାଇଁ ବାଦବିସମ୍ବାଦ, ରାଜନୀତି ।

ନାରୀ ଓ ଧନ କଣ ସବୁ ଅନର୍ଥର ମୂଳ ?

ଗାନ୍ଧୀଥିଲେ ସତ୍ୟର ପୂଜାରୀ । କେଉଁଗାନ୍ଧୀ କଥା ମୁଁ କହୁଛି ? କେତେ ଗାନ୍ଧୀ ତ ଦେଶ ଶାସନ କଲେଣି । ଗାନ୍ଧୀ ନାଁ ଟି ଏବେ ଆଇଁଷିଆ ହୋଇଗଲାଣି । ମୁଁ ଗୁଣ୍ଡବ୍ୟକ୍ତିଏ ଯେ ଗାନ୍ଧୀ ନାଁକୁ ଘୋଷି ହେଉଛି । ଗାନ୍ଧୀ ମାର୍କା ଟୋପି ପିନ୍ଧଲେ ବେଇଜ୍ଜତ ହେବାକୁ ପଡୁଛି । ନୂଆ ନୂଆ ହିରୋ ହିରୋଇନ ମାର୍କେଟରେ ଦେଖାଦେଲେଣି । ପାର୍ଲାମେଣ୍ଟରେ ସେଇମାନଙ୍କର ଭିଡ । ମଶାଣିରେ ଶାଗୁଣାମାନ ଦେଖି ଜମି ଯାଉଥିବା ପରି ଲୋକେ ପାର୍ଲାମେଣ୍ଟ ହିରୋମାନଙ୍କ ପାଖରେ ଭିଡ କଲେଣି । କ୍ରିକେଟ ତାରକା, ସିନେମା ହିରୋଇନ, ଜଙ୍ଗଲର ନାୟିକା ସମସ୍ତେ ଏବେ ପାର୍ଲାମେଣ୍ଟର ନାୟକ । ରାଜନୀତି ଚାଷ ପେସା ଓ ବେଉସା । ରାଜନୀତି କଲେ କେମିତି ହୁଅନ୍ତା । ସମସ୍ତଙ୍କର ରାଜନୀତି ଆଡକୁ ଦୌଡ । ପଲପଲ ରାଜ୍ୟ ନେତାମାନଙ୍କ ଖଟିରେ । ଖଦିପୋଷାକ ପିନ୍ଧା । ଖଦି ପିନ୍ଧଲେ ନେତା ହେବ ଏକଥା କେଉଁଠି ଲେଖା ହୋଇଛି କେଜାଣି ।?

ଖଦି ପିନ୍ଧିଥିବା ଲୋକ ପଙ୍କୁଆ ପୁଷ୍କରିଣୀରେ ହଂସ ମାନଙ୍କ ପହଁରିବା ପରି ମୋତେ ଜଣାଗଲା । ଦଳ ସବୁକୁ ନିରେଖିଲି । ଦଳ ଭର୍ତ୍ତିପୋଖରୀରେ ଦଳ କାଢିବାକୁ କିଏ ଅଛି ଯେ । ପୋଖରୀ ହୁଡାରେ ମାତ୍ର କେଇଜଣ ନାଲି ଟୋପିପିନ୍ଧା ସ୍ୱେଚ୍ଛାସେବକ । ମାଛ, କଙ୍କଡା, ଗେଣ୍ଡା, ସବୁ ହଂସମାନଙ୍କ ଥଣ୍ଟରେ ଓ ମୁଣ୍ଡରେ । ଭେଳିକି, ଖାଲି ଭୋଟ୍‌ଭେଳିକି । ଟିକେଟ ପାଇଁ ଟଙ୍କା, ନିର୍ବାଚନ ପାଇଁ କର୍ମୀମାନଙ୍କ ପାଇଁ ଟଙ୍କା ଖାଲି ଟଙ୍କା । ଗାନ୍ଧୀ ବସିଛନ୍ତି ସେଇ ଟଙ୍କାରେ । ଜୟ ! ଗାନ୍ଧୀ ବୁଢାକୀ, ଜୟ ଜୟ । ଟଙ୍କା ସାହେବକୀ ଜୟ ।

ମୋର କଣ ନିର୍ବାଚନରେ ଛିଡା ହେବାର ଇଚ୍ଛା ଅଛି କି ?

ବନ୍ଧୁ ଜ୍ୟୋତିଷ ଆସିଲା ନାହିଁ ଏଯାଏ । ନଆସିଲା ଭଲ କଲା । ଏଇକ୍ଷିଣା ବସି ବାଜେ ଗପ କରିଥାନ୍ତା । ଚା ବିସ୍କୁଟ ଖାଇଥାନ୍ତା । ଡେରି ହୋଇଥିଲେ ଡିନର ବି ।

ଡିନର୍ ଶବ୍ଦଟା କାନକୁ ଭଲ ଶୁଭୁଛି । ସାହିତ୍ୟ ସଭାରେ ଡିନର ଓ କକଟେଲ୍ ପାର୍ଟି । ବଡ ବଡ ତାରକା ହୋଟେଲରେ ସାହିତ୍ୟ ସଭା ।

ଚମତ୍କାର ।

ମୁଁ ସାହିତ୍ୟ କଲେ କେମିତି ହୁଅନ୍ତା ? ଲେଖକ, ଔପନ୍ୟାସିକ, କବି କଣ ଗୋଟେ ଏଥିରୁ ହେବା ଭାରି ସହଜ ।

ମୁଁ ଅପେକ୍ଷା କରିଛି ମୋର ବଂଧୁ ଜ୍ୟୋତିଷକୁ । କଟକ ସହରର କେଉଁ ଏକ ଅଖ୍ୟାତ ଉପଗଳିରେ ତାର ଭଡାଘର । ସାମ୍ନାରେ ଉପଗଳିର ପାଇଖାନା ନାଳ । ଗଳି ମୋଡରେ ମହାଦେବ ଶିବଙ୍କ ମନ୍ଦିର । ଝରୁଛି ବଉଳ ଗଛରୁ ଫୁଲ ।

ବିରାଟ କାଠ ଗେଟ୍‌ରେ ଝୁଲୁଛି ତାର ନାଁ ଲେଖାଥିବା ପଟାଟିଏ । ନାଁ ଲେଖାପଟା ନଥିଲେ କେହି କାହାକୁ ଚିହ୍ନେନା । ଏଠି କିଏ କାହାକୁ ଚିହ୍ନୁଛି ଯେ !



# ଘାଟ

ଖରସୁଆ ନଈକୂଳରେ ଖଣ୍ଡିତର ଗାଁ ଟିର ପ୍ରସିଦ୍ଧି କାହିଁ କେତେ କୋଶ ବ୍ୟାପି ଯାଇଥାଏ । ଜଗନ୍ନାଥ ସଡକ କଡରେ ନଈ ପାର ହେବା ପାଇଁ ଏଇଠି କେବଳ ଘାଟ ଓ ବଡବଡ ଡଙ୍ଗା । ଏତେ ଗଭୀର ଓ ପ୍ରଶସ୍ତ ଗଣ୍ଡଯେ ଖରାଦିନେ ଅକାତକାତ ପାଣି । ନାଉରିଆ ନଈ ପାରି କରିବାବେଳେ ଡଙ୍ଗା ଏମୁଣ୍ଡରୁ ସେ ମୁଣ୍ଡକୁ ସିଧା ନଯାଇ ବଙ୍କେଇ ବଙ୍କେଇ ହୋଇ ଚାଲେ ।

ନଈ ଦି କଡରେ ପଠା । ଦୁଇଧାର ପାଣି ଏକାଠି ମିଶିଯାଇ ଏଇ ପ୍ରଶସ୍ତଗଣ୍ଡ ଅନେକ କୁମ୍ଭୀର ଓ ମଗରମାନଙ୍କର ନିରାପଦ ଆଶ୍ରୟସ୍ଥଳ ପାଲଟି ଯାଇଥିଲା । କେବେ କେବେ ଗାଈଟିଏ, ବଳଦଟିଏ ଏଇଠି ହଜିଯିବାର ଦେଖାଯାଇଛି ।

ଏ କୂଳରୁ ସେ କୂଳ ପାଣି ଲାଗି ଯାଇଥିବାବେଳେ ବୋହୂ ଝିଆଷୁଣୀଏ ତୁଠରେ ଗାଧୋଇବା ପାଇଁ ଡଙ୍ଗାଗୁଡିକୁ ଚାରିକଡ ଘେର ଦିଆଯାଇଥାଏ । ଡଙ୍ଗାକୁ ଡେଇଁ କୁମ୍ଭୀର ମାଡି ଆସିବନି ବୋଲି ଜନମାନସରେ ପ୍ରବାଦ ପ୍ରଚଳିତ ରହିଛି । ଦେଢଶୁର ଭାଇବୋହୂର ସମ୍ପର୍କ ।

ସେଇଠି ଯେ ଜଗନ୍ନାଥ ସଡକ ଛିଣ୍ଡିଯାଇଛି, ପୁଣି ଆଉ ପାଖରେ ନାଲି ଗୋଡି ବିଛାହୋଇ ଲମ୍ବିଯାଇଛି କାହିଁ କେତେ ଦୂର । କଲିକତା ଓ ଦୂରଦୂରାନ୍ତରୁ ଏଇ ବାଟେ ବସ୍ ମାନଙ୍କରେ ଯାତ୍ରୀମାନେ ଯିବାବେଳେ, ବସ୍‌ରୁ ଓହ୍ଲାଇ ଛୋଟ ଡଙ୍ଗାରେ ନଈ ପାର ହୁଅନ୍ତି । ବଡ ବଡ ଚାପରେ ବସ୍ ଓ ଅନ୍ୟ ଗାଡିଗୁଡିକ ପାର କରାଯାଏ ।

ଖଣ୍ଡିତର ନଈକୂଳରେ କାହିଁ କେଉଁ ଯୁଗରୁ ମା ମଙ୍ଗଳା ଆବିର୍ଭାବ ହୋଇଛନ୍ତି, ତାହା କାହାକୁ ଜଣାନାହିଁ । ଇତିହାସ ବହିରେ କେବଳ ପ୍ରସିଦ୍ଧିଲାଭ କରିଥିବା ମନ୍ଦିର ମାନଙ୍କର ନାମ ଯାହାକୁ ରାଜାମହାରାଜା ତାଙ୍କ ବଂଶର ଗ୍ରହଦୋଷ ଦୂର କରିବାପାଇଁ ନିର୍ମାଣ କରିଥିଲେ ଦେଖିବାକୁ ମିଳୁଥିବାବେଳେ, ଖରସୁଆ ନଈକୂଳରେ ପ୍ରସିଦ୍ଧି ଲାଭ କରିଥିବା ମା ମଙ୍ଗଳା କାଳୀଘାଟଠାରୁ

ଥାସୁଥିବା ଜଗନ୍ନାଥ ଦର୍ଶନ ପିପାସୁ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି ।

ମା ମଙ୍ଗଳାଙ୍କୁ ନେଇ ଗଢି ଉଠିଥାଏ ଅନେକ ଦୋକାନ । ଧାଡି ଧାଡି ମିଠା ଓ ଚା ଦୋକାନ ଯାତ୍ରୀମାନଙ୍କର କ୍ଲାନ୍ତି ଅପମୋଦନର ମାଧ୍ୟମ ହୋଇଥାଏ ।

ସିନ୍ଦୁର ବୋଳା ବେଲପତ୍ରି ଯାତ୍ରୀମାନଙ୍କ ହାତରେ ମାଡିଦେଇ ଜୟଜଗନ୍ନାଥ କହିଦେବାମାତ୍ରେ ପଣ୍ଡିମାଯାତ୍ରୀ ଦୁଇହାତ ଯୋଡି ମୁଣ୍ଡରେ ମାରେ; ଏବଂ ପଇସେ ଦି ପଇସା ଥାଳିରେ ମକେଇ ଦିଏ । କେତେ ଥାଳିରେ ଦେବେ ଯେ ସେମାନେ ? ବେଙ୍କାର ଟୋକାମାନେ କଳିକତି ଗାମୁଛାମାରି, ମୁଣ୍ଡରେ ସିନ୍ଦୁର କଲି ଲଗାଇ ଯାତ୍ରୀମାନଙ୍କ ପାଖରେ ନିଜ ନିଜର କରାମତି ପଣିଆ ଦେଖାଇବାବେଳେ ସେମାନଙ୍କ ବ୍ୟବହାରର ଅଶାଳୀନତାରେ ସେହି ଯାତ୍ରୀମାନେ ଅସ୍ତବ୍ୟସ୍ତ ହୋଇ ପଡନ୍ତି କିନ୍ତୁ ତୁଣ୍ଡରୁ କଥା ପଇଟେ ନାହିଁ ।

ଯେତେହେଲେ ବିଦେଶାଗତ ବାଟୋଇ । ବାଟରେ ଏତେ ଝଗଡାରୁ କଣ ମିଳେ ? ଏଇତ ଗୋଟିଏ ଜାଗା ସମୁଦାୟ ଯାତ୍ରା ଭିତରେ । ଏଇଠି ଦି ଘଣ୍ଟାରୁ ଅଧିକ ପାର ଉଠାର ହେବାକୁ ଲାଗି ଯାଇଥାଏ । କେହି ନିଜେ ଚାହିଁଲେ ତ ଡଙ୍ଗାରେ ପାର ହୋଇ ପାରିବନି ।

ମଦନା ଦାସ କେବଳ ଗାଁ ଲୋକଙ୍କଠାରୁ ଗାଳି ଶୁଣେନି, ବାଟୋଇମାନଙ୍କୁ ହଇରାଣ ହରକତ କରିବାରେ ଓସ୍ତାଦ୍ । ଭେଣ୍ଡିଆ ଟୋକାଟାଏ । କୁଟାଖଣ୍ଡିକ ଦିଖଣ୍ଡ କରେନାହିଁ । କିଏ କଣ କହିଲା ସେଥକୁ ତାର ଓଜର ନଥାଏ । ଦିନ ତମାମ ଗାଁର ଏମୁଣ୍ଡରୁ ସେ ମୁଣ୍ଡକୁ ବୁଲି କେତେବେଳେ କାହାକୁ ଚୁମୁଟି ପକାଏ, କାହାକୁ ଟିକାରୀ ମାରେ, କାହା ପାଣିଗରାକୁ ଛୁଇଁ ଦିଏ । ବାଟୋଇମାନଙ୍କ ଆଡକୁ ବୁଲାକୁକୁରଟାକୁ ପେଲିଦେଇ ଦୂରରୁ ହେଁ ହେଁ ହୋଇ ହସେ ଓ ସମୟ ସମୟରେ ଦୌଡି ଦୌଡି ପଳାଏ । ଡଙ୍ଗା ଉପରେ ଚଡିଯାଇ ହା ହା କରୁ କରୁ କାତ ମାରିବାକୁ ଚେଷ୍ଟା କରେ । ଯାବତୀୟ ଫାଜିଲାମିରେ ଜିତିବିତେ ମଦନା ଦାସର ।

ଘରେ ବୁଢା ବାପ ଓ ମା । ଏକୋଇରବଲା ବିଶିକେଶନ । ମା ମଙ୍ଗଳାଙ୍କ ନିକଟରେ ଲଗାତାର ସାତ ଦିନ ଅଧିଆ ପଡି କାଳିଆବୋଦା ଓ ପାଞ୍ଚଦେଇ ଏଇ ମଦନାକୁ ପାଇଥିଲା ତା ମା ।

ଯେତେ ଚେଷ୍ଟା କରି ବୁଢାବାପ ମଦନାକୁ ସ୍କୁଲରେ ପଢାଇ ପାରିନଥିଲା । ଏବେ ମଧ କୌଣସି କାମରେ ଲଗାଇବା ତା ପାଇଁ ଅସମ୍ଭବ ଥିଲା ।

ଡଙ୍ଗାଘାଟରେ କାମ କରିବା ପାଇଁ ବାପବୁଢା ନିଲାମ ଧରିଥିବା ପଦନି ସାହୁ ପାଖରେ କେତେ ନେଉଳିଛାଉଳି ହେଲା । ଖଣ୍ଡିତର ଗାଁର ଧନୀ ଥିଲା ପଦନି ସାହୁ । ବର୍ଷକୁ ବର୍ଷ ତହସିଲ ଅଫିସିର ବାବୁମାନଙ୍କୁ ହାତରେ ରଖିଥିବା ହେତୁ, କାମଧେନୁପରି ଡଙ୍ଗାଘାଟରୁ ଅନବରତ ଟଙ୍କା ଝଡୁଥିବାରୁ ପଦନି ସାହୁ କେବଳ ଖଣ୍ଡିତର ଗାଁ ନୁହେଁ, ଆଖପାଖ ପାଞ୍ଚଖଣ୍ଡି ଗାଁର ସର୍ବେସର୍ବା ମାଲିକ ପାଲଟି ଯାଇଥିଲା ।

ଗାଁ ମୁଣ୍ଡ କେଉଟ ସାହି ତାଙ୍କ କଥାରେ ଉଠ୍‌ବସ୍ ହେଉଥିଲେ । ସାହିର ବୁଢାଠାରୁ ଛୁଆ ପର୍ଯ୍ୟନ୍ତ ଡଙ୍ଗାଘାଟରେ ନାଉରିଆ କାମରେ ଲାଗି ଯାଇଥିଲେ । ଡଙ୍ଗାଘାଟ ନିଲାମ ସହିତ ମା

ମଙ୍ଗଳାଙ୍କ ତତ୍ତ୍ୱାବଧାରକଭାବେ, ଭୋଗ ଦୋକାନ, ଫୁଲ ଦୋକାନର ଲମ୍ବା ଧାଡି ବସାଇ ଦେଇ, ମାସିକିଆଭତ୍ତାରେ ନିଯୁକ୍ତି ଦେଇଥିଲା । ଯେ କେହି ପାଟି ଫିଟାଇଲେ ଘରମୁହାଁ ଫେରିବା ନିଶ୍ଚିତ ଥିଲା ।

ପଦନି ସାହୁ ଭାଗ୍ୟଚକ୍ରରେ ମା ଲକ୍ଷ୍ମୀଙ୍କର ଅବାରିତ ଆଶୀର୍ବାଦ ରହିଥିବାର ସୁକୁଟା ନାଏକ ତାର ହାତ ଗଣନା କରି ଯେଉଁ ଦିନଠୁ କହି ଦେଇଥିଲା, ସେଇ ଦିନଠୁ ପଦନି ସାହୁ ପଛକୁ ଫେରି ଚାହିଁବାର କେହି ଦେଖିନି । ପଦନା, ପଦନି, ପଦନି ସାହୁରୁ ସେ ପଦନିବାବୁ ପାଲଟି ଯାଇଥିଲେ । ଏଥରକ ସେ ଅଞ୍ଚଳର ଏମ୍.ଏଲ୍.ଏ. ଟିକେଟ୍ ପାଇବା ପାଇଁ ଆପାତତଃ ବସନ୍ତିଆ ଦଳ ତରଫରୁ ନିଶ୍ଚିତ ଜଣା ପଡୁଥିଲା ।

ପଦନିବାବୁଙ୍କ ପାଖରେ ମଦନା ବାପ ବୁଢା ଯେତେ ନେଉଳି ଛାଉଳି ହେଲେ ହେଁ ପଦନିବାବୁ ଆଦୌ ତରଳିଲେ ନାହିଁ । ଓଲଟି ଛିଗୁଲେଇ ହୋଇ କହିଲେ, ବୁଝିଲ ମଦନାବାପ, ତୁମେ ବୁଢା ମଣିଷ । କଣ କହିବି ତୁମକୁ । ମଦନା ଯଦି ଡଙ୍ଗା ବାହିବ, ଡଙ୍ଗାରେ କାମ କରିବ,ଲୋକେ କେହି ବସିବେଟି ସେଥିରେ ?

ମନ ଦୁଃଖରେ ଫେରିଆସି ଘରେ ପହଞ୍ଚିବାବେଳେ ମଦନାର ସୁସୁରୀମାରି ମା ପାଖରେ ଟଙ୍କାପାଇଁ ଝନଝଟରେ ବିରକ୍ତ ହୋଇଉଠିଥିଲା ତା ବାପ । ବହୁ ଟଙ୍କା ଉପାର୍ଜନ କରି ବୁଢାବୁଢୀଙ୍କର ଭରସା ହେବାର ଆଶା ମଦନାବାପର ମଉଳି ଯାଇଥିଲା । ଏକମାତ୍ର ପୁଅକୁ କିଛି କେଭେ ନ କହିଥିବା ବାପ ରାଗ ଜରଜର ହୋଇ କହିଉଠିଥିଲେ, ଏଭଳି ପୁଅ ଖରସୁଆ ପାଣିରେ ବୁଡି ମଲେ ଭଲ ।

ବାପର ଏଇ ପଦକ କଥାରେ ଚମକି ଉଠିଥିଲା ମଦନା ।

ମଦନା ବାପର ମନକଥା ବୁଝିପାରି ନଥିଲା । ଘରୁ ପଖାଳ ଦିଟା ପେଟରେ ପକାଇ ବୁଲାକୁକୁରଙ୍କ ପଛରେ ଦୌଡି ଦୌଡି ବାଡେଇବା, ନଈକୂଳକୁ ଯାଇ ଡଙ୍ଗା ବାହୁଥିବା ନାଉରିଆଙ୍କୁ ମନଇଚ୍ଛା ଗାଳିଦେବା ବ୍ୟତୀତ, ତାର ଆଉ କୌଣସି କାମଅଛି ବୋଲି ସେ କେବେ ବିଚାର କରି ପାରିନଥିଲା ।

ଗାଁ ସାରା ସମସ୍ତେ ତାକୁ ଦେଖିଲେ ମୁହଁ ମୋଡି ଚାଲି ଯାଉଥିଲେ । ମଦନା ଏକା । ଯେମିତି ନଈଧାରରେ ଭାଙ୍ଗି ପଡି ରହିଥିବା ହୁଲି ଡଙ୍ଗା ।

ନଈଘାଟର ଦକ୍ଷିଣକୋଣରେ ପଦନି ସାହୁର ଦିଟା ଛୋଟଡଙ୍ଗା । ନଈ ପଠାରେ ନାନାଜାତିର ଫସଲ । ବୋଝ ବୋଝ ପୋଟଳ ଡଙ୍ଗାରେ ଲଦି ହାଟ ପାଳିକି ପାଳି ବିକ୍ରି ହୁଏ ।

ବଡ ବଡ ଚାପ ଦେହରେ ବାଡେଇ ହୋଇ ଫେରନ୍ତା ପାଣିଗୁଡିକ ପିଚି ହୋଇଯାଏ ହୁଲିଡଙ୍ଗାରେ । ନାଉରିଆ ଛାତି ସେତେବେଳେ ଥରିଉଠେ । ଭାରିଡଙ୍ଗା ଆହୁଲାରେ ଡେଉକାଟି ଧିରେ ଧିରେ ଚାଲୁଥିବାବେଳେ, ହଠାତ୍ ଢେର ସାରା ପାଣି ପଶିଗଲେ, ସେଇ ଅକାତକାତ ଗଣ୍ଡରେ ଚିରଦିନ ହଜିଯିବାର ଭୟ, ଯେତେବଡ ବାହାଦୂର ନାଉରିଆକୁ ହତବତ କରିପକାଏ ।

ଦିନସାରା ଏମୁଣ୍ଡ ସେ ମୁଣ୍ଡ ବୁଲିବୁଲି କ୍ଳାନ୍ତ ହୋଇ ପଡିବା ମାତ୍ରେ ନଈଧାର ଉପରେ

ନିର୍ବିକାର ଭାବେ ପଡ଼ି ରହିଥିବା ଭଙ୍ଗାଡଙ୍ଗା ପାଖରେ ପହଞ୍ଚିଯାଏ ମଦନା ଓ ଚାହିଁ ରହେ ନଈକୁ । ଭେଳା ଭେଳା ଭାସୁଥିବା ବଡ଼ବଡ଼ ଚାପକୁ ଏବଂ କେବେକେବେ ଫଡ଼ାସ୍ କରି ପାଣି ଚହଲେଇ ଡେଇଁ ଉଠୁଥିବା କୁମ୍ଭୀରମାନଙ୍କୁ ।

ଅକାତକାତ ପାଣି ଦେହରେ ପହଁରିବାକୁ ମନହେଲେ ବି କଣ କେଜାଣି ଭାବି ରହିଯାଏ । ନଈଭିତରେ ସେ ନିଜ ଜୀବନକୁ ଦେଖିବାକୁ ଚେଷ୍ଟାକରେ । ଡଙ୍ଗା ଉପରେ ଠିଆହୋଇ ଜୋରରେ ପକାଉଥିବା ନାଉରିଆ ମାନଙ୍କର କାତ ଓ ଆହୁଲା, ତା ଆଖିରେ ଚମକ ସୃଷ୍ଟିକରେ ।

ଗଣ୍ଡଠାରୁ କିଛି ଦୂରରେ ଭାଡ଼ିମାରି ମାଛ ମାରୁଥିବା ତା ଗାଁ ଟୋକାମାନଙ୍କୁ ଦେଖେ । ସକାଳୁ ଟାଣ ଖରାପୂର୍ବରୁ ବନ୍ଶି ଡୋର ଫିଙ୍ଗିଦେଇ, ଲେଉଟାଣି ଖରା ପର୍ଯ୍ୟନ୍ତ ବସିଥିବା ଗାଁ ଟୋକାମାନେ, ତାକୁ ଦୂରରୁ ମା ମଙ୍ଗଳାଙ୍କ ବେଢ଼ାରେ ଏଠି ସେଠି ଥୁଆ ହୋଇଥିବା ମାଟି ଘୋଡ଼ାମାନଙ୍କ ପରି ଦେଖାଯାଉଥାଏ ।

ମଦନା ବୁଡ଼ିଯାଉଥିବା ସୂର୍ଯ୍ୟଦେବତାଙ୍କୁ ଚାହିଁ ଭଙ୍ଗା ଡଙ୍ଗା ଉପରେ ଥାକକରି ଥୋଇଥିବା ଛୋଟ ଗୋଡ଼ିଗୁଡ଼ାକୁ ପାଣିକି ଫିଙ୍ଗେ । ପୁଣି ସୁସୁରି ମାରେ । ଅମରି ଡାଙ୍ଗକୁ ହାତରେ ଚକ୍ରିକରି ବୁଲାଇ ବୁଲାଇ ମା ମଙ୍ଗଳାଙ୍କ ମନ୍ଦିର ବେଢ଼ାରେ ପଶିଯାଏ ।

ସୁନିଆଁ ଡୋଫାନ ତେତିଶ ଅଙ୍କରେ ମା ମଙ୍ଗଳା ନିଜେ ଏଠାରେ ବିଜେ ହୋଇ ମହନ୍ତ ବୃନ୍ଦାବନ ଭାରତୀ ଗୋସ୍ୱାମୀଙ୍କ ମାର୍ଫତରେ ପ୍ରତି ସପ୍ତାହରେ ବୋଦା ରକ୍ତ ପାନକରିବାର ପରମ୍ପରାର ଚିହ୍ନ ବେଢ଼ା ଭିତରେ ଚିତ୍ରିତ ହୋଇ ରହିଥାଏ । ସେଇଠି କଲିକତା ନାଳି ଗାମୁଛାକୁ ପାରିଦେଇ ଖୁବ୍ ଜୋରରେ ଘୁଙ୍ଗୁଡ଼ି ମାରିବାକୁ ଆରମ୍ଭ କରିଦିଏ ମଦନା ।

ମଦନା ବାପ ଜାଣେ । ଗାଁ ସାରା ସଭିଏଁ ଜାଣନ୍ତି । ମଦନା କିନ୍ତୁ ବୁଝିପାରେନା । କେବଳ ସେ ଖରସ୍ରୁଆ ନଈକୂଳରେ ଡଙ୍ଗା ଏ ପାଖରୁ ସେପାଖ ହୋଇ ଯିବାବେଳେ ସୂର୍ଯ୍ୟ କେମିତି ପୂର୍ବରୁ ଯାଇ ପଶ୍ଚିମରେ ଲାଲକିରଣ ବିଞ୍ଚିଦିଅନ୍ତି, କାହା ବନ୍ଶୀରେ ବଡ଼ମାଛଟା ଲାଗୁଲାଗୁ ଡେଇଁ ଚମ୍ପଟ ହେଲା ଓ ମନ୍ଦିର ବେଢ଼ାରେ ସାଅନ୍ତ ପଣ୍ଡା କାହା ସହିତ ଫୁସ୍ ଫୁସ୍ ହୋଇ,ଟଙ୍କା ଲୁଗାକାନିରେ ଗୁଞ୍ଜି ଦେଲା, ତାକୁ ଅଭ୍ୟସ୍ତ ଢଗଢମାଳିରେ ସୁସୁରିମାରି ସେ ଗପେ ।

ମଦନା ଓ ଖଣ୍ଡିତର ଗାଁର ଏଇ ନିତିଦିନିଆଁ ଘଟଣାରେହଠାତ୍ ଦିନେ ଅମଙ୍କି ପଡ଼ିଲା ।

ଡଙ୍ଗା ଚାପ ଉପରେ ଧଳାସୁନ୍ଦର ଚିକ୍କଣ କାର୍‌ଟା ଉଠି ପଡ଼ିବା ମାତ୍ରେ କାନ୍ଧରେ ବନ୍ଧୁକ ପକାଇ ଠିଆ ହୋଇଥିବା ପୁଲିସ୍‌ମାନେ ସିଧା ବୁଟ୍ କଚାଡ଼ି ଛିଡ଼ା ହୋଇଗଲେ । କାର୍ ଭିତରୁ ଲମ୍ବା ଡେଙ୍ଗା ଅଧାବୟସର ମାଇପିଚିଏ ହାତରେ ଛୋଟ ଝିଅଟିଏ ଧରି ବାହାରି ପଡ଼ିଲେ । ବଡ଼ଚାପଟା ସେତେବେଳକୁ କୂଳଛାଡ଼ି ଦେଇଥାଏ ।

ମଦନା ନଈପଠାରେ ଡେଉ ଭାଙ୍ଗୁଥିବା କାଶତଣ୍ଡି ଫୁଲକୁ ତୋଳିବା ପାଇଁ ନେଉଜିଛାଉଜି ହୋଇ ପଦନି ସାହୁ ହୁଲିଡଙ୍ଗାରେ ବସି ସୁସୁରି ମାରୁଥିଲା ଓ ବଡ଼ଚାପ ନିକଟକୁ ଡଙ୍ଗାକୁ ନେବାକୁଚିହାଉଥିଲା । ତା ଆଖିରେ ବଡ଼ଚାପ ଉପରେ ଥିବା କାର୍‌ଟା ଚକ୍‌ମକ୍ କରୁଥିଲା ।

''ହେ, ହେ, ପଡ଼ିଯିବ... ପଡ଼ିଯିବ....'' ବୋଲି ବଡ଼ପାଟିରେ ମଦନା ଚିତ୍କାର କରୁକରୁ

ଚାପ ଉପରୁ ସେ ଛୋଟ ଝିଅଟି ପାଣିକୁ ଖସି ପଡିଥିଲା । ଡଙ୍ଗାଚାପର ତିନିକୋଣରେ ତ୍ରିଭୂଜ ପରି ଖୁମ୍ବ ସଦୃଶ୍ୟ ଛିଡା ହୋଇଥିବା ପୁଲିସ୍ ବାଲାଙ୍କ ଦୃଷ୍ଟି ଅନ୍ତରାଳରେ ତଡିତ୍‌ବେଗେ ଏ ଘଟଣାଟି ଘଟି ଯାଇଥିଲା ।

ମଦନାର ଚିତ୍କାର ପବନ ସହିତ ତାଳଦେଇ ଧିରଭାବେ ବଡଚାପ ନିକଟରେ ପହଞ୍ଚିଗଲା ବେଳକୁ ପାଣିର ପ୍ରଖର ସ୍ରୋତରେ ଛୋଟ ଝିଅଟିର ଚାପଠାରୁ ଦୂରତ୍ୱ ବଢିଯାଇଥିଲା ଓ ପାଣିର ପ୍ରଚଣ୍ଡ ସ୍ରୋତରେ କେବଳ କେରାଏ କେଶଗୁଚ୍ଛ ଦେଖାଯାଉଥିଲା ।

କେହିକିଛି ଜାଣିବା ପୂର୍ବରୁ ମଦନା ନିଜ ପିଠରେ ଝିଅଟିକୁ ପକାଇ ହୁଲିଓ ବଡଚାପ ମଝିରେ ପ୍ରଖର ଜଳସ୍ରୋତକୁ କାଟିବାକୁ ଚେଷ୍ଟା କରୁଥିଲା । ନଈକୂଳଠାରୁ ପଠାଦେଇ ସେ କୂଳ ପର୍ଯ୍ୟନ୍ତ ଗଦାଗଦା ଲୋକ ଆଖିର ପଲକକୁ ରୋକି ସେଇ ଦିଗକୁ ଚାହିଁ ରହିଥିଲେ । ବଡଚାପ ଘୂର୍ଣ୍ଣାୟମାନ ଗତିରେ ଛାଡିଥିବା କୂଳକୁ ଫେରିଆସୁଥିଲା ଓ ହୁଲିଡଙ୍ଗା ନିକଟରେ ପହଞ୍ଚିବାକୁ ଚେଷ୍ଟା କରୁଥିବା ମଦନାକୁ ନଈପାଣିରୁ ଉଦ୍ଧାର କରିବା ପାଇଁ ଚାପରେ ଥିବା ଲମ୍ବାଲମ୍ବା ଦଉଡିକୁ ଫିଙ୍ଗିବାରେ ପୁଲିସ ଓ ନାଉରିଆମାନେ ଆପ୍ରାଣ ଉଦ୍ୟମ କରିବାରେ ଲାଗିଥିଲେ । ହୁଲିଡଙ୍ଗା ଉପରକୁ ମଦନା ନିଜ ପିଠି ଉପରୁ ବହୁକଷ୍ଟରେ ନିର୍ଜୀବପ୍ରାୟ ଝିଅଟିକୁ ଫିଙ୍ଗିଦେବା ମୁହୂର୍ତ୍ତରେ ପ୍ରକାଣ୍ଡକାୟ ମଗରଟିଏ ଜୋରରେ ପାଣିକୁ ଦିଭାଗ କରି ହଠାତ୍ ସେଇ ସ୍ଥାନରେ ଦେଖାଦେଲା ।

ଘାଟ ଉପରେ ଜମି ଯାଇଥିବା ହଜାର ହଜାର ଲୋକଙ୍କ ଭିତରୁ ବଡ ପାଟିରେ ମିଳିତ ଚିତ୍କାର ଶୁଭୁଥିଲା, "ମଦନା, ମଦନା ।"

ଖଣ୍ଡେ ଦୂରରେ ଭାସି ଉଠିଲା ମଦନା । କୂଳକୁ ନାଉରିଆ ଓ ପୁଲିସ୍ ସାହାଯ୍ୟରେ ଟାଣିଆଣିବାବେଳେ ମଦନାର ଜୀବନ ଖରସୁଅ ପାଣିଭିତରେ ହଜି ଯାଇଥିଲା ।

ମଦନାର ନିର୍ଜୀବ ଶରୀରଟିକୁ ଚିତ୍‌କରି ଶୁଆଇ ଦେଇଥିଲେ ତାର ନିତିଦିନର ସାଥୀ ନିଃସହାୟ ଅବସ୍ଥାରେ ପଡିଥିବା ସେଇ ଭଙ୍ଗା ଡଙ୍ଗା ନିକଟରେ ।

ବନ୍ଧୁକଧାରୀ ପୁଲିସ୍‌ମାନେ ବନ୍ଧୁକମୂନକୁ ତଳକୁକରି ମଦନାକୁ ଘେରି ଶେଷ ସମ୍ମାନ ଜଣାଉଥିଲେ । ପୁଲିସ୍ ପଦାଧିକାରୀ ମଦନାବାପକୁ କୁଣ୍ଢାଇ ପକାଇ ତା ହାତରେ ଚମଡାବ୍ୟାଗଟିଏ ଧରାଇ ଦେଇଥିଲେ ।

ଆବାକାବା ହୋଇ ଚାହୁଁଥିଲା ମଦନା ବାପ । ତୁ କୁଆଡେ ରାଗ କରି ଚାଲିଗଲୁ ରେ କହି ଠା ହୋଇ ସେଇଠି ବସି ପଡିଲା ସେ । ହାତରୁ ବ୍ୟାଗଟି ଛିଟିକି ପଡି ବାଲି ଉପରେ ଥାକଥାକ ନୋଟ ବିଡା ବିଛି ହୋଇଗଲା ।

ପଦନି ସାହୁ ଡିମା ଆଖି ମେଲି ନୋଟଗୁଡାକୁ ଏକାଠି କରିବାକୁ ନଇଁ ପଡିଲା ।

ନିତିଦିନ ପରି ନଈପାଣିରେ ହଜିଯିବାକୁ ଉପକ୍ରମ କରୁଥିଲେ ସୂର୍ଯ୍ୟଦେବତା । ନଈଘାଟରେ ପାରି ହେବାକୁ ଲୋକମାନଙ୍କର ଗହଳି, ମା ମଙ୍ଗଳାଙ୍କ ମନ୍ଦିରରେ ସନ୍ଧ୍ୟା ଆଳତିଘଣ୍ଟା ଶବ୍ଦରେ ମିଳେଇ ଯାଇଥିଲା ।



# ଧର୍ମାବତାର

ଟେଲିଫୋନ୍ ରିସିଭର ଉଠାଇଲା ସୁରେନ୍ଦ୍ରପଣ୍ଡା । ବ୍ୟାଙ୍କ ମ୍ୟାନେଜର ।

"ହ୍ୟାଲୋ, ହ୍ୟାଲୋ ।"

"ଦକ୍ଷିଣ ବ୍ୟାଙ୍କରୁ କହୁଛନ୍ତି । ମ୍ୟାନେଜର ଅଛନ୍ତି ?"

"ଆଜ୍ଞା, ମୁଁ ମ୍ୟାନେଜର କହୁଛି ।"

"ଏ ହେଉଛି ମୁଖ୍ୟମନ୍ତ୍ରୀଙ୍କ ଦପ୍ତର । ଆପଣ ମିସେସ୍ ରୁବି ସାମନ୍ତରାୟଙ୍କ ନାମରେ ଦୁଇ ଲକ୍ଷ ଟଙ୍କାର ଏକ ବ୍ୟାଙ୍କ ଡ୍ରାଫ୍ଟ କରି ଶିଘ୍ର ପଠାନ୍ତୁ । ମୁଖ୍ୟମନ୍ତ୍ରୀ ତାଙ୍କ ରିଲିଫ୍ ପାଣ୍ଠିରୁ ଏହି ଦୁଇଲକ୍ଷ ଟଙ୍କା ମିସେସ୍ ରୁବି ସାମନ୍ତରାୟଙ୍କୁ ତାଙ୍କର ପତି ଡାକ୍ତର ସବିନୟ ସାମନ୍ତରାୟଙ୍କ ଚିକିତ୍ସା ପାଇଁ ଦେଇଛନ୍ତି । ଚିଠି ଯାଇ ଆପଣଙ୍କ ନିକଟରେ ପହଞ୍ଚିବ । ଆପଣ ଡ୍ରାଫଟ୍ ରେଡି କରନ୍ତୁ ।"

ଅପର ପାର୍ଶ୍ୱରୁ ରସିଭରଟିକୁ ଠକ୍ କରି ଥୋଇ ଦେବାର ଶବ୍ଦ ହେଲା । ସୁରେନ୍ଦ୍ର ପଣ୍ଡା ଆବାକାବା ହୋଇ ଚାହିଁଲା ! କାଉଣ୍ଟରରେ ପ୍ରବଳ ଭିଡ । କିଏ ଏହି ରୁବି ସାମନ୍ତରାୟ ? ଦୁଇ ଲକ୍ଷ ଟଙ୍କା ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଚିକିତ୍ସା ପାଇଁ ଦାନ ଶୁଣି ତାର ପିଳେହୀ ପାଣି ହୋଇ ଯାଇଥିଲା । ନିଶ୍ଚିତ କେହି ବିଖ୍ୟାତ ଲୋକ । ନଚେତ୍ ମୁଖ୍ୟମନ୍ତ୍ରୀଙ୍କ ରିଲିପ୍ ପାଣ୍ଠିରୁ ଦୁଇ ଲକ୍ଷ.. ଶହେ, ହଜାରେ ନୁହେଁ ଲକ୍ଷେ ଲକ୍ଷେ ହୋଇ ଦୁଇଲକ୍ଷ... ।

ଫରେନ୍ କରେନ୍‌ସି ଡ୍ରାଫ୍ଟ ଇସ୍ୟୁ କରିବା ତାର କ୍ଷମତାର ବାହାରେ । ବିଦେଶୀ ମୁଦ୍ରାର ଡ୍ରାଫ୍ଟ ପାଇଁ ଲୋଡା ରିଜର୍ଭବ୍ୟାଙ୍କର ଅନୁମତି ପତ୍ର । ଏପର୍ଯ୍ୟନ୍ତ ଟଙ୍କାର ଦେଖାନାହିଁ । କା ଭରସାରେ ସେ ଡ୍ରାଫ୍ଟ ଇସ୍ୟୁ କରିବେ । କେତେବେଳେ କେଉଁ କଥା । ବ୍ୟାଙ୍କରେ ଯେତେବେଶି ଜାଲିଆତି ହେବାକୁ ଲାଗିଛି । ଟିକିଏ ଅସାବଧାନ ହେଲେ....

ବାସ୍, ସବୁ ଶେଷ । ତାର ଚାକିରୀ ଖଣ୍ଡିକ....

ନା, ସେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତର ହେଉ କି ନିଜେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ, ସେ ଡ୍ରାଫ୍ଟ୍ ଇସ୍ୟୁ କରିବ ନାହିଁ । ପ୍ରଥମେ ନିଜେ ବଞ୍ଚିଲେ ସିନା ବୋପାର ନାଁ ମନେ ପଡିବ ।

ପୁଣି ଥରେ ଚିନ୍ତା କଲେ ସୁରେନ୍ଦ୍ର । ସେ ଯଦି ଟିକିଏ ରିସ୍କ ନ ନିଅନ୍ତି, ତେବେ ତାର ଟାରଗେଟ୍ କ୍ରସ୍ ହେବନି । ଡ୍ରାଫଟ୍ ଇସ୍ୟୁ ଘଟଣାକୁ ଯଦି ସିରିୟସ୍ ଭାବେ ଗ୍ରହଣ କରି ଏକାଉଣ୍ଟ ବନ୍ଦ ହୋଇଯାଏ, ତେବେ ତାର ଜମା ଲକ୍ଷ୍ୟ ପୂରଣ ହେବ ନାହିଁ.....

ନାଁ, ଯାହା ହେଉ ପଛେ, ତାକୁ ଡ୍ରାଫ୍ଟ ଇସ୍ୟୁ କରିବାକୁ ହେବ ।

ଏହା ସ୍ଥିର କରିବାବେଳେ ଏକ ରମଣୀ କଣ୍ଠସ୍ୱରରେ ଟେବୁଲ ଉପରେ ସ୍ଥିର ନିବଦ୍ଧ ଚକ୍ଷୁଦ୍ୱୟ ଚଳଚଞ୍ଚଳ ହୋଇ ଉଠିଲେ ।

"ଆପଣ ମ୍ୟାନେଜର ? ମୁଁ ହେଉଛି ରୁବି ସାମନ୍ତରାୟ । ଡାକ୍ତର ସବିନୟ ସାମନ୍ତରାୟଙ୍କର ପତ୍ନୀ । ମୋର ଫରେନ୍ କରେନ୍‌ସି ଦରକାର । ଚାରିଲକ୍ଷ ଟଙ୍କାର ଡ୍ରାଫ୍ଟ ଆପଣ ଦେଲେ ମୁଁ ରିଜର୍ଭ ବ୍ୟାଙ୍କରୁ ତାକୁ ଭଙ୍ଗାଇ ଡଲାର ପାଇବି । ମୋ ସ୍ୱାମୀଙ୍କର ଚିକିତ୍ସା ଆମେରିକାରେ ହେଉଛି । ସେଠାକୁ ଏହି ଟଙ୍କା ପଠାଇବାକୁ ହେବ । ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ଆପଣଙ୍କୁ ଟେଲିଫୋନରେ କହିଛନ୍ତି । ଆପଣ ମୋ ଏକାଉଣ୍ଟରୁ ଦୁଇଲକ୍ଷ ଡ୍ର କରି ତଥକ୍ଷଣାତ ମୋତେ ଡ୍ରାଫ୍ଟ ଦିଅନ୍ତୁ ।"

ଏତକ କହି ସାରି ଆଖିରୁ ସନ୍ ଗ୍ଲାସଟିକୁ ବାହାର କଲେ ମିସେସ୍ ରୁବି ସାମନ୍ତରାୟ ଓ ନଥ୍ କରି ସାମନା ଚୌକୀ ଉପରେ ବସି ପଡିଲେ ।

ସୁରେନ୍ଦ୍ର ପଣ୍ଡା ତାଙ୍କର ପଚିଶ ବର୍ଷ ଚାକିରୀ ଜୀବନ କାଳରେ କେବେ ଏପରି ପରିସ୍ଥିତିର ସମ୍ମୁଖୀନ ହୋଇ ନଥିଲେ । ସେ ରୁବି ସାମନ୍ତରାୟଙ୍କ ମୁହଁକୁ ଚାହିଁବାକୁ ଇଚ୍ଛା କରୁଥିଲେ ବି ଚାହିଁ ପାରୁନଥିଲେ । କେହି ଯେପରି ଆଖି ଦୁଇଟିକୁ ଜାବୋଡି ଧରୁଥିଲା । ଆଧୁନିକତାର ଛାପ ରୁବିଙ୍କ ସର୍ବାଙ୍ଗରେ ଚନ୍ଦନପରି ଲେପି ହୋଇ ଯାଇଥିଲା । ତାଙ୍କ କହିବା ଭଙ୍ଗୀରେ ଅନୁରୋଧ ମିଶା ଆଦେଶ ।

ମୁଖ୍ୟ ମନ୍ତ୍ରୀଙ୍କ ଦପ୍ତରର ତଡିତ୍ ବେଗେ କାର୍ଯ୍ୟ କରିବାର ନିର୍ଦ୍ଦେଶ ସଂପର୍କରେ ଭାବୁଥିଲା ବେଳେ ରୁବି ସାମନ୍ତରାୟଙ୍କର ଆର୍ବିଭାବ ତାଙ୍କର ମନକୁ ଚହଲାଇ ଦେଇଥିଲା । ସମୟ ହାତରେ ଖୁବ୍ କମ୍ । ହେଡ୍ ଅଫିସ୍ ସହିତ ଯୋଗାଯୋଗ କରି ବିଦେଶୀ ମୁଦ୍ରାର ଅନୁମତି ଆଣିଲେ ଓ ଡ୍ରାଫ୍ଟ ଇସ୍ୟୁ କରିଦେଲେ ।

ମିସେସ୍ ରୁବି ସାମନ୍ତରାୟଙ୍କ ଏକାଉଣ୍ଟରେ ଆଉ କେତେଲକ୍ଷ ଟଙ୍କା ତାଙ୍କ ସଞ୍ଚୟ ଯୋଜନାକୁ ବୃଦ୍ଧିପାଇଁ ରହିଥିବାର ଦେଖି ଆଶ୍ୱସ୍ତି ଲଭିଥିଲେ । ଯେମିତି ଝଡବେଗରେ ପଶି ଆସିଥିଲେ ମିସେସ୍ ସାମନ୍ତରାୟ, ସେମିତିତଡିଦ୍ ବେଗରେ ବାହାରକୁ ଚାଲିଯାଉଥିଲେ । କାଉଣ୍ଟର ଖାଲି ହୋଇଯାଇଥିବାରୁ ଅଧସ୍ତନ କର୍ମଚାରୀ ମାନଙ୍କ ଛଅଣ ଆଖିମାନେ କାଚପରଦା ଭିତରକୁ

ଠେଲିହୋଇ ପଶି ଆସୁଥିଲେ ।

ବାହାରେ କାର୍ ଷ୍ଟାଟ୍ ହେବାର ଶବ୍ଦ ଶୁଣା ଯାଉଥିଲା ।

X X X

କ୍ଲାନ୍ତ, ଶ୍ରାନ୍ତ ଓ ଅବସନ୍ନ ହୋଇ ପ୍ରାୟ ରାତି ୮ଟା ବେଳକୁ ଘରକୁ ଫେରିଥିଲେ । ବ୍ୟାଙ୍କ ତରଫରୁ ନିଆଯାଇଥିବା ଭଡାଘର । ଏହା ବାଂଲୋ ନୁହେଁ କିମ୍ବା ସେତେ ଛୋଟନଥିଲା । ରାଜଧାନୀର ପେଣ୍ଟଘରରେ ଏଇ ଘରଟିକୁ ଦଶବର୍ଷତଳେ ବ୍ୟାଙ୍କ ଲିଜ୍‌ନେଇଛି । ଭୁବନେଶ୍ୱର ଟ୍ରାନ୍‌ସଫର ହୋଇ ଆସିବାପରେ ଗାଁରୁ ଅନେକ ଲେଖାଯୋଖା ବନ୍ଧୁବାନ୍ଧବଙ୍କର ଛୁଆଧାଡି ଶ୍ରାବଣମାସର ଝଡିବର୍ଷାପରି ଲାଗି ରହିଛି । ପୁଅ ଦୁହିଁଙ୍କର ଶୋଇବା ପ୍ରାୟ ତାଙ୍କ ବେଡ୍‌ରୁମରେ ।

ଗାଁ ପରିବେଶରେ ବଢିଥିବା ସୁରେନ୍ଦ୍ର ମଧ୍ୟବିତ୍ତ କର୍ମଚାରୀର ମାନସିକତା ପ୍ରତି ସଚେତନ ଥାଇ ସୁଦ୍ଧା ସାମାଜିକ ଚାଲିଚଳନ ଓ ସମ୍ପର୍କ ହେତୁ ପାରିବାରିକ ଅସନ୍ତୋଷର ସମ୍ମୁଖିନ ହେବାକୁ ବାଧ ହୁଅନ୍ତି । ପତ୍ନୀ ସୁରମାଙ୍କ ବଦଳିହୋଇ ଭୁବନେଶ୍ୱର ଆସିବାକୁ ଇଚ୍ଛାନଥିଲେ ହେଁ କାଳେ ରିଟାୟର୍ଡପରେ ମୁଣ୍ଡ ଗୁଂଜିବାକୁ ଏଇ ରାଜଧାନୀରେ ଜାଗା ଖଣ୍ଡେ ମିଳିବ ତାରି ଅନୁସନ୍ଧାନରେ ସେ ଆସିବାକୁ ଚେଷ୍ଟାକରି ସଫଳ ହୋଇଥିଲେ । କିନ୍ତୁ ଭୁବନେଶ୍ୱରରେ ଅଯାଚିତ ଅତିଥି ମାନଙ୍କର ଭିଡ ଓ ତାଙ୍କ ଉପରେ ଅଧିକାର ଜାହିର କରିବାରେ ଅନଭ୍ୟସ୍ତ ସୁରମା ଓ ତାଙ୍କର ପିଲାମାନେ ଅତିଷ୍ଠ ହୋଇ ଉଠିଥିଲେ ।

ଦୁଆର ମୁହଁରେ ଷ୍ଟାର୍ଟ ବନ୍ଦକରି ସ୍କୁଟର ରଖିଥିବାବେଳେ ଟମ୍ ଟମ୍ ଓ ତାଚ୍ଛଲ୍ୟ ଭଙ୍ଗୀରେ ପୁଅ କହିଲା, ବାପା ! ଗାଁରୁ କିଏ ଜଣେ ମାଉସୀ ମଉସା ଆସିଛନ୍ତି । ତାଙ୍କ ପୁଅ ଦେହ ବହୁତ ଖରାପ । ଏତକ କହିସାରି ପ୍ରଶ୍ନାଳ ଆଖିରେ ଚାହିଁ ସେ ପୁଣି ପଚାରିଲା, ତୁମର କଣ କେହି ମଉସା ମାଉସୀ ଅଛନ୍ତି ?

ନିଆଁ ଆଗ୍ନେୟଗିରି ମଧ୍ୟରେ ବନ୍ଦହୋଇ ରହିବାପରି ରାଗ ଓ କ୍ରୋଧକୁ ମନରେ ଚାପିଧରି ସ୍କୁଟରକୁ ପୁଅହାତକୁ ଦେଇଦେଇ ଭିତରକୁ ପଶିଗଲେ । ତାଙ୍କ ଗାଁର ଲେଖାଯୋଖାରେ ମାଉସୀ । ବେଳ ଅବେଳରେ ଆସି ବୋଉକୁ ଘରକାମରେ ସାହାଯ୍ୟ କରନ୍ତି । ସେଇ ମାଉସୀ ତାଙ୍କ ପୁଅ ଦିବାକରକୁ ନେଇ ଆସିଛନ୍ତି । କଣ କହିଥାନ୍ତେ ସୁରେନ୍ଦ୍ର । ତାଙ୍କୁ କଣ ଚାଲିଯିବା ପାଇଁ କହିଥାନ୍ତେ ? ପିଲାମାନେ ସହରର ମଉସା ମାଉସୀ ମାନଙ୍କୁ ଆଦରରେ ଅତିଥିସତ୍କାର କରୁଥିବାବେଳେ ଗାଁର ଏହି ନିରୀହ ବୁଢାବୁଢୀଙ୍କ ପ୍ରତି ବିତସ୍ପୃହ ମନୋଭାବ ସୁରେନ୍ଦ୍ରଙ୍କ ମନରେ ଆଘାତ ଦେଇଥାଏ ।

ବୁଢୀ ମାଉସୀର ସୁକୁସୁକୁ କାନ୍ଦ ସୁରକୁଦେଖି ବହୁଗୁଣରେ ବଢିଗଲା । ବଡପାଟିରେ କାନ୍ଦିକୋଟି, "ସୁରରେ ! ମୁଁ ମରି ଯାଉଁଥାଏରେ । କଣ କରିବି, ହତଭାଗୀ ଜୀବନକୁ ନିଆଁ ଲାଗୁନାହିଁରେ । କେତେ କଷ୍ଟକରି, ଗାଁ ଦେବଦେବୀଙ୍କୁପୂଜାକରି ପାଇଥିବା କଷ୍ଟକରି ଏଇପୁଅ ଆଜି ମରଣ ଜନ୍ତାରେ । ତା ଦେହ ଖରାପ । ପେଟ ଫୁଲୁଛି । ଗାଁ ପାଖ ଡାକ୍ତର କହିଲେ ସହରରେ ଦେଖା । ତୋ ଛଡା ଆମର କିଏ ସାହାଭରସା ଅଛି ? ତୋ ବୋଉ ଥିବାବେଳେ ଆମକଥା

ବୁଝୁଥିଲା । ଚୋରି ଭରସାରେ ତାକୁ ଏଠାକୁ ନେଇଆସିଛି । ତୁ ବାବୁ ଯଦି ସାହାନହେବୁ, ଆମେ କୋଉ କୂଳକୁ ହେବୁ !''

ସୁରେନ୍ଦ୍ରର ଦେହମୁଣ୍ଡକୁ ଆଉଁସିଦେଇ ନଥିକରି ବସି ପଡିଲା ବୁଢୀ ।

କୋଠରୀଭିତରେ ମାଉସୀପୁଅ ଦିବାକର ଶୋଇରହି କଷ୍ଟରେ ଚିତ୍କାର କରୁଥାଏ । ରାଜଧାନୀ ଡାକ୍ତରଖାନାରେ ରୋଗୀମାନଙ୍କର ଅସଂଖ୍ୟଭିଡ, ଟଙ୍କା ପଇସା ଦିଆନିଆ ଭିତରେ ବହୁକଷ୍ଟରେ ତାକୁନେଇ ଭର୍ତ୍ତିକଲେ ସୁରେନ୍ଦ୍ର । ଡାକ୍ତର.ପରୀକ୍ଷା ନିରୀକ୍ଷାରୁ ଦେଖାଗଲା ଦିବାକରର ଗୋଟିଏ କିଡ୍‌ନୀ ନଷ୍ଟ । ଯଦି ତାକୁ ଖୁବ୍ ଶୀଘ୍ର ନବଦଳାଯାଏ, ତେବେ ତାର ଜୀବନ ବିପନ୍ନ । ଯେତେଶୀଘ୍ର ଚିକିତ୍ସା ପାଇଁ ଭେଲୋର ନେବାକୁ ଡାକ୍ତରମାନେ ପରାମର୍ଶ ଦେଲେ । ଡାକ୍ତର ମାନଙ୍କର ନିରାଶାବାଣୀରେ ଭାଙ୍ଗି ପଡିଥାଏ ଦିବାକର ମା । କେଉଁଠୁ ଆଣିବୁ ଏତେଟଙ୍କା କାନ୍ଦ କାନ୍ଦ ହୋଇ କହୁଥାଏ ସୁରେନ୍ଦ୍ରଙ୍କୁ । ବୁଢାମଉସା ଗୁମ୍‌ସୁମ୍ ହୋଇ ମୁଣ୍ଡରେ ହାତଦେଇ ବସିଥାଆନ୍ତି । ଯେପରି ଲାଗୁଥାଏ ବଞ୍ଚିବା ତାଙ୍କପାଇଁ ମୂଲ୍ୟହୀନ । ନିଜର ଏକମାତ୍ର ପୁତ୍ରକୁ ରକ୍ଷାକରିବାକୁ ଭାବିଥିଲେ ଡାକ୍ତରଖାନାରେ ଭର୍ତ୍ତୀକରି ଦେବାପରେ ସେ ନିଶ୍ଚିନ୍ତ ହେବେ ।

ଆଜକୁ ଆଠଦିନ ହେଲାଣି । ସେମାନଙ୍କର ଆସିବା ଦିନଠାରୁ ଏପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚର ହିସାବ ନାହିଁ । ଅଫିସ୍ ମଧ ଯାଇପାରିନାହାନ୍ତି । ରାତିଦିନ ତାଙ୍କ କାର୍ଯ୍ୟରେ ବ୍ୟସ୍ତ ହେତୁ ସ୍ତ୍ରୀ ଓ ପିଲାମାନଙ୍କର ତାଙ୍କ ଉପରେ ବିରକ୍ତିକୁ ସେ ସାମନା କରିବାକୁ ଅକ୍ଷମ । ଡାକ୍ତରଖାନାରେ ରହିଯାଉଥିଲେ ହୁଏତ ସେ ମୁକ୍ତି ପାଇଯାଇଥାନ୍ତେ । ଏମାନଙ୍କୁ କେମିତି ପ୍ରବୋଧ ଦେଇ ବିଦାକରିବେ ଓ ଚିକିତ୍ସା ବ୍ୟବସ୍ଥା କରିବେ ସେହିଚିନ୍ତା ତାଙ୍କୁ ବ୍ୟସ୍ତ ଓ ବିବ୍ରତ କରିପକାଉଥାଏ ।

ନଈରେ ବୁଡିଯାଉଥିବା ଲୋକ ହଠାତ୍ କାଠଖଣ୍ଡିଏ ପାଇ ଯେପରି ନଈପାର ହେବାକୁ ସାହାସପାଏ, ସୁରେନ୍ଦ୍ରଙ୍କ ମନରେ ହଠାତ୍ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ସାହାଯ୍ୟ ପାଇବା ବିଚାର ପ୍ରବେଶକଲା । ସେ ପର୍ଯ୍ୟନ୍ତ ରୁବି ସାମନ୍ତରାୟଙ୍କ କଥା ଭୁଲିପାରି ନଥିଲେ । ମଉସା ମାଉସୀଙ୍କୁ ଆଶ୍ୱାସନାର ବାଣୀଶୁଣାଇ ସେ କହିଲେ, ଶୁଣ ମାଉସୀ, ମୁଁ ତତେ କଣ ବା ସାହାଯ୍ୟ କରିପାରିବି, ତତେ ଖଣ୍ଡିଏ ଦରଖାସ୍ତଲେଖି ଦେଉଛି । ତୁ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତକର । ସେ ଚାହିଁଲେ ସରକାରଙ୍କଠାରୁ କିଛି ଅର୍ଥ ସାହାଯ୍ୟ ମିଳିପାରିବ ।

ଆଶାର ଆଲୁଅ ସେହି ବୁଢୀ ଆଖିରେ ଦିକ୍‌ଦିକ୍ କରିବାକୁ ଲାଗିଲା । ବୁଢୀ ତା କଥାକୁ ବେଶ୍ ସମର୍ଥନ କରି ମୁଖ୍ୟମନ୍ତ୍ରୀଙ୍କୁ ଦୁହେଁ ସାକ୍ଷାତ କରିବେ ବୋଲି ସ୍ଥିର ହେଲା ।

X X X

ସଚିବାଳୟର ସାତତାଲା ବିଶିଷ୍ଟ ବିରାଟ ଅଟ୍ଟାଳିକାର ଚତୁର୍ଦ୍ଦିଗରେ ଘେରା ହୋଇଥିବା ପାଚେରୀ ଭିତରକୁ ପ୍ରବେଶ କରିବାପାଇଁ ଅନୁମତି ପତ୍ର ପାଇବାରେ ଦୁଇଦିନ ବିତିଗଲା । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ସିନା ପହଞ୍ଚିଲେ; କିନ୍ତୁ ବୁଢା ବୁଢୀଙ୍କ ମୁଖ୍ୟମନ୍ତ୍ରୀଙ୍କ ସହ ସାକ୍ଷାତ ହୋଇପାରିଲା ନାହିଁ । ପ୍ରଧାନ ସଚିବ ନିଜର ବଡପଣିଆକୁ ଜାହିରକରି ଓଲଟି ତାଗଲ୍ୟାଭରା

କଣରେ କହିଲେ ରାଜ୍ୟସାରା ଲୋକେ ରୋଗରେ ପଡିଲେ ମୁଖ୍ୟମନ୍ତ୍ରୀ କଣ ଟଙ୍କା ଦେବାକୁ ଅଛନ୍ତି !

ବୁଢୀ କାନ୍ଦି କାନ୍ଦି ପ୍ରଧାନ ସଚିବଙ୍କ ଗୋଡତଳେ ପଡିଲା । ଆକୁଳ ମିନତୀଷ୍ଟିଲ୍ ନିର୍ମିତ ହୃଦୟକୁ ଭେଦକରି ପାରିଲା ନାହିଁ । ଦୟା ଓ ସହାନୁଭୂତି ରଖିଲେ ରାଜ୍ୟଶାସନ ହୋଇପାରେନା ଏହା ବୁଝିଥିବା ମୁଖ୍ୟମନ୍ତ୍ରୀଙ୍କ ପ୍ରଧାନ ସଚିବ ନିର୍ଲିପ୍ତ ଭାବରେ ସେମାନଙ୍କୁ ଫେରାଇ ଦେଉଥିଲେ ।

ଭଗ୍ନ ହୃଦୟ ଓ ମନନେଇ ଫେରିଆସିଥିଲେ ଦୁହେଁ । ହସ୍‌ପାତାଳରେ ଆସନ୍ନ ମୃତ୍ୟୁକୁ ଅପେକ୍ଷାରତ ପୁଅକୁ ଚାହିଁବାକୁ ସେମାନଙ୍କ ମନରେ ସାହସ ନଥାଏ ।

ମୁଖ୍ୟମନ୍ତ୍ରୀଙ୍କୁ ଯାଇ ଦେଖା କଲେ ହୁଏତ ସେ ନିଜେ ଦୟା କରି ପାରନ୍ତି ବୋଲି ସୁରେନ୍ଦ୍ର ମତ ଦେଲେ । ଶିବଙ୍କ ପାଖରୁ ବର ମିଳିପାରେ କିନ୍ତୁ ତାଙ୍କର ନନ୍ଦୀ, ଭୃଙ୍ଗୀମାନେ କାହିଁକି ଶୁଣିବେ । ଯିଏ ନନ୍ଦି, ଭୃଙ୍ଗିଙ୍କୁଟପି ଯାଇପାରିଲା ସେହି କେବଳ ବର ପାଇବାର ଅଧିକାରୀ ବୋଲି ଯୁକ୍ତି ବଳରେ ବୁଝାଇ ଦେଇଥିଲା ସୁରେନ୍ଦ୍ର ।

ସୁରେନ୍ଦ୍ରର ଆଶାବାଣୀ ତାଙ୍କୁ ଅମୃତତୁଲ୍ୟ ବୋଧ ହେଉଥିଲା । ତାରି ଭରସାରେ ସେମାନେ ପୁଅକୁ ରାଜଧାନୀକୁ ଆଣିଛନ୍ତି । ଦେଖାଯାଉ, ପୁଣି ଥରେ ଚେଷ୍ଟା କଲେ କ୍ଷତି କଣ ? ଏହି ସିଦ୍ଧାନ୍ତରେ ବୁଡା ବୁଢୀ ସମ୍ମତ ହୋଇ ସକାଳୁ ସକାଳୁ ମୁଖ୍ୟମନ୍ତ୍ରୀଙ୍କ ଗେଟ୍ ନିକଟରେ ପହଞ୍ଚିଯାଇଥିଲେ ।

.....ସୁରମ୍ୟ ଅଟ୍ଟାଳିକା । ଗେଟ୍‌ରେ ବନ୍ଧୁକଧାରୀ ଦରୁଓ୍ୱାନ । ଦରଓ୍ୱାନ୍‌କୁ ଟପି ପିମ୍ପୁଡିଟିଏ ମଧ ଭିତରକୁ ଯିବା କଷ୍ଟ । ବୁଢାବୁଢୀଙ୍କର ଆକୁଳ ନିବେଦନ ଓ ବାରିହୋଇ ଉଠୁଥିବା ସେମାନଙ୍କର ଦାରିଦ୍ର୍ୟ ଦରଓ୍ୱାନର ହୃଦୟକୁ ତରଳାଇ ଦେଇଥିଲା । ସେ ସେମାନଙ୍କୁଭିତରକୁ ଯିବାର ଅନୁମତି ଦେଇ ମୁଖ୍ୟମନ୍ତ୍ରୀ ଏମାନଙ୍କୁ ସହାୟ ହୁଅନ୍ତୁ ବୋଲି ମନେ ମନେ ଭଗବାନଙ୍କୁ ପ୍ରାର୍ଥନା ମଧ କଲା ।

ମୁଖ୍ୟମନ୍ତ୍ରୀଙ୍କ ପାଖରେ ଅନେକ ଭିଡ । ସମସ୍ତଙ୍କର ଅନେକ ଅଭାବ ଓ ଅଭିଯୋଗ । ରାଜ୍ୟର ଶାସକ ସେ । ପ୍ରଜା ମାନଙ୍କର ମା, ବାପ । ରାଜାମାନଙ୍କ ପାଖରେ ଗୁହାରୀ ହେବାର ଦିନ ଚାଲିଯାଇଥିବାରୁ ପ୍ରଜା ପ୍ରତିନିଧି ଭାବେ ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ହିଁ ରାଜା । ସେ ଯଦି ଲୋକ ମାନଙ୍କର ହାରି ଗୁହାରୀ ନଶୁଣିବେ, ଆଉ କିଏ ଶୁଣିବ ? ଯୁବକ, ଛାତ୍ର, ପୁରୁଷ, ନାରୀ, କର୍ମଚାରୀ, ସମାଜର ସବୁଶ୍ରେଣୀ ଲୋକଙ୍କର ଭିଡ । କେତେ ଶୁଣିବେ ମୁଖ୍ୟମନ୍ତ୍ରୀ, କେତେ ଅଭାବକୁ ପୂରଣ କରି ପାରିବେ ? ସରକାରଙ୍କ ଠାରୁ ମାଗଣା ପାଇବାର ଚାହିଦା ବଢିବାରେ ଲାଗିଛି । କାହାର କେତେ ଚାହିଦା ସେ ପୂରଣ କରିପାରିବେ ।

ଧସେଇ ପଶିବା ସେମାନଙ୍କ ଦ୍ୱାରା ସମ୍ଭବ ହେଉ ନଥିଲା । ଅପେକ୍ଷା କଲେ । ତାଙ୍କର ସୁନଜର ପଡିବା ପର୍ଯ୍ୟନ୍ତ ଅପେକ୍ଷା କରି ବସି ରହିଲେ ଦୁହେଁ । ଶିବଙ୍କ ନିକଟରୁ ବର ପାଇବା ପାଇଁ ଧାନସ୍ଥ ଦମ୍ପତି ନିରବ ସାଧନାରେ ମଜ୍ଜିଗଲେ ।

ତୁମେ ଦୁହେଁ ସେଠି କାହିଁକି ବସିଛ, ହଁ କଣ ହେଲା ? ତାଙ୍କ ମୁହଁକୁ ଚାହିଁଲେ ମୁଖ୍ୟମନ୍ତ୍ରୀ ।

ଗରୀବ ମଣିଷ । ମୂଲଲାଗି ପେଟ ପୋଷୁ । ଗୋଟିଏ ବୋଲି ପୁଅ । ସେହି ପୁଅର ଦେହ ଖରାପ । କିଡ୍‌ନୀ ନଷ୍ଟ ହୋଇଛି । ଡାକ୍ତର ଖାନାରେ ଅଛି । କହୁଛନ୍ତି.... ଭେଲୋର ନେବାକୁ । ଆପଣ ଦୟାବତାର । ଧର୍ମାବତାର, ଚାହିଁଲେ ପୁଅକୁ ନେଇପାରିବୁ ।

ବୁଢା ଚୁପ୍ ହେଲା । ବୁଢୀ ଆଉ ପାଦେ ଆଗେଇଯାଇ ବେକରେ ପଣତକାନିକୁ ଗୁଡ଼ଇ ମୁଣ୍ଡ ନୁଆଁଇ ଗୋଡ ତଳେ ପଡିଗଲା । ରଜା ମଣିମା, ଦୀନଜନରକ୍ଷକ ପ୍ରଭୁ ! ତୁମେ ହିଁ ମୋର ସାହା ଭରସା । ତୁମେ କୃପା କଲେ ମୋ ଜୀବନ ଧନ ଜୀବନ ପାଇବ । ତୁମେ ହିଁ ଆମର ଆଶାର କିରଣକୁ ଜ୍ୟୋତି ଦାନ କରିପାରିବ ।

ବୁଢୀ ଆଖିର ଟୋପ ଟୋପା ଲୁହ ମୁଖ୍ୟମନ୍ତ୍ରୀଙ୍କ ପାଦକୁ ଧୋଇ ଦେବା ପାଇଁ ଚେଷ୍ଟା କରୁଥାଏ ।

ଏଠି ଏ କଣ ପାଲା ଚାଲିଛି । ତୁମ ପୁଅ ଦେହ ଖରାପ । ମୁଁ କଣ କରିପାରିବି । ମୋ ପାଖରେ ଟଙ୍କା କାହିଁ ? ବିରକ୍ତି ପ୍ରକାଶ କରି ଉଠି ଚାଲିଗଲେ ସେ ।

ଶୂନ୍ୟ, ହତବାକ୍ ଆଖିରେ ଚାହୁଥିଲେ ଦୁହେଁ ପରସ୍ପରକୁ । ସୁରେନ୍ଦ୍ର ମନେ ମନେ ଈଶ୍ୱରକୁ ପ୍ରାର୍ଥନା କରି ଏହି ଗରୀବ ଦମ୍ପତିଙ୍କ ପ୍ରତି କରୁଣା କରିବାକୁ ଓ ତରୁଣ ଯୁବକଟିର ପ୍ରାଣ ରକ୍ଷା କରିବାକୁ ଆକୁଳ ନିବେଦନ ଜଣାଉଥିଲେ । ଗେଟ୍ ପାଖରେ ଛିଡା ହୋଇ ପରୀକ୍ଷାରେ ଫେଲ୍ ହୋଇଥିବା ଛାତ୍ରଟି ବିମର୍ଷ ଚିତ୍ତରେ ବାହୁଡି ଆସୁଥିବା ପରି ଫେରି ଆସୁଥିବା ସେହି ବୃଦ୍ଧ ଦମ୍ପତି ଦ୍ୱୟକୁ ଚାହିଁ ରହିଥିବା ବେଳେ କୋଠିର ଫାଟକ ବାହାରକୁ ତ୍ରିରଙ୍ଗ ପତାକା ଉଡାଇ ଧଳାକାର୍‌କୁ ବାହାରକୁ ଯାଉଥିବାର ହର୍ଣ୍ଣ ଶୁଣି ସେ ସଚେତନ ହୋଇ ଉଠୁଥିଲେ । ସେହି କାର୍ ଭିତରେ ମୁଖ୍ୟମନ୍ତ୍ରୀଙ୍କୁ ଢଳି ପଡି ବସିଥିବା ସମ୍ଭ୍ରାନ୍ତ ରୂପବତୀ ମହିଳାଟିର ସୁନ୍ଦର ମୁହଁ ତାଙ୍କ ଆଖିରେ ତଡିତ୍ ବେଗେ ଚିହିକା ମାରି ଦେଲା ।

କାର୍‌ର ଅଦୃଶ୍ୟ ହେଉଥିବା ଗତିପଥକୁ ଓ ବୃଦ୍ଧ ଦମ୍ପତିଙ୍କର ଅସ୍ପଷ୍ଟ ଛାୟା ମଧ୍ୟରେ ସେ ନିଜକୁ ହଜାଇ ଦେଇଥିଲେ ।



# ନରେଶ ବାବୁଙ୍କ କୁକୁର

ଟପ୍ ଟପ୍ ବର୍ଷା ସତ୍ତ୍ୱେ ସୂର୍ଯ୍ୟକାନ୍ତ ନୟାପଲ୍ଲୀ ସ୍ଥିତ ତାଙ୍କ ବନ୍ଧୁ ନରେଶ ବାବୁଙ୍କ ବାସ ଭବନରେ ପହଞ୍ଚି ଯାଇଥିଲେ । ସରକାରୀ ବଂଗଳୋ । ଘରଟି ଅନେକ ଦିନର ପୁରୁଣା । କିନ୍ତୁ ନରେଶ ବାବୁ ଏଇ ଅଳ୍ପ ଦିନ ହେବ ସେଠାକୁ ସ୍ଥାନାନ୍ତରିତ ହୋଇଛନ୍ତି । ତଥାପି ଆସିବା ବର୍ଷକ ଉପରେ ।

କେତେଦିନ ଆଉ ନଅ ନମ୍ବର ଫ୍ଲାଟର ସେଇ ଦି ବଖୁରିଆ ଛୋଟ ଘରଟିରେ ମୁଣ୍ଡ ଗୁଂଜି ରହିଥାନ୍ତେ । ପିଲାମାନେ ବଡ ବଡ ହେଲେଣି । ଚାକିରୀ ଜୀବନର ଆରମ୍ଭ କାଳରେ ଦୁଇ ପ୍ରାଣୀଙ୍କର ସେହି ଘର ଥିଲା ପ୍ରାସାଦ । କିନ୍ତୁ ସବୁଦିନ ସମାନ ନ ଯିବା ପରି, ବର୍ଷକୁ ବର୍ଷ ପୁତ୍ର ସନ୍ତାନ ପ୍ରାପ୍ତିର ଆନନ୍ଦ ସେହି ଘରର ପରିସୀମାକୁ ତାଙ୍କ ପାଇଁ ସଙ୍କୁଚିତ କରି ଦେଇଥିଲା ।

ତା ଛଡା ନିଜର ତ ପୁଣି ପ୍ରତିଷ୍ଠା ଓ ସମ୍ମାନ ଅଛି । ପହିଲୁ ପହିଲୁ ଚାକିରୀରେ ନିଜ ପୋଜିସନ୍‌କୁ ଜାଣି ହୁଏନା । ପୋଜିସନ୍ ଓ କ୍ଷମତାର ବଳୟ ଆଗକୁ ଯେତେ ବଢେ ଆନୁପାତିକ ଭାବେ ଆନୁସଙ୍ଗିକ ଆବଶ୍ୟକତାରେ ପରିବର୍ତ୍ତନ ଘଟେ । ଏଇ ପରିବର୍ତ୍ତନର ମୁଖ୍ୟ ହେଉଛି ଘର ।

ସେ କିଛି କହିବା ପୂର୍ବରୁ ସରକାର ନିଜ ଆଡୁ ସପେଇ ଦେଇ ତାଙ୍କୁ ଏହି କ୍ୱାର୍ଟର୍ସକୁ ଆଲଟ୍‌ମେଣ୍ଟ କରିଦେଲେ । ସିନିୟର ସ୍କେଲର ଅଫିସର । କେତେଦିନ ନ ଦେଇ ରହିଥାନ୍ତେ ? ନରେଶ ବାବୁ ନିଜ ଆଡୁ ଦାବୀ କରି ନ ଥିଲେ ହେଁ ତାଙ୍କର ସାଙ୍ଗମାନେ ଡିପାର୍ଟମେଣ୍ଟ ଉପରେ ଅଧିକ ଚାପ ପକାଇ ତାଙ୍କୁ ସେହି କ୍ୱାର୍ଟର୍ସକୁ ଦେବାକୁ ସକ୍ଷମ ହୋଇଥିଲେ । କେବେ କୌଣସି କଥା ନିଜ ପାଇଁ ନରେଶ ବାବୁ କହିବାର କେହି ଶୁଣି ନାହିଁ । ତାଙ୍କର ଏପରି ଅନେକ ବଂଧୁ ଅଛନ୍ତି, ଯେଉଁମାନେ ଅଯାଚିତ ଭାବେ ଅସମ୍ଭବକୁ ତାଙ୍କ ପାଇଁ ସମ୍ଭବ କରିଦେବେ । କେବଳ ନରେଶ ବାବୁଙ୍କ ଇଶାରା ଯଥେଷ୍ଟ । ତାଙ୍କ ବ୍ୟକ୍ତିତ୍ୱର ସାଧା ସିଧା ଭାବ ଓ ସରଳତା ବହୁ କମ୍ ଲୋକଙ୍କଠାରେ ଦେଖିବାକୁ ମିଳେ । ରାସ୍ତାରେ ଚାଲିଗଲା

ବେଳେ ସାମାନ୍ୟ ପିମ୍ପୁଡିଟିକୁ କାଳେ କଷ୍ଟ ହେବ, ସେଥିପ୍ରତି ମଧ୍ୟ ସଚେତନ ସେ । ଗାଡି ମଟରରେ ଯିବା ଆସିବା ପ୍ରତି ଅନାଗ୍ରହ ସତ୍ତ୍ୱେ ଯେ କେହି ବଂଧୁ ତାଙ୍କ ସହିତ ଚା କପ୍‌ରେ ଯୋଗ ଦେଲେ ସେ କହିବେ, "ବୁଝିଲେ ମଦନ ବାବୁ ! କ୍ୟାପିଟାଲରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ଯିବା ପାଇଁ ଗାଡି ନ ହେଲେ ଅଚଳ ! ପିଲାମାନେ ମୋ ସ୍କୁଟରକୁ ନେଇ ଚମ୍ପଟ । ଏ ବୟସରେ ପୁଣି ସ୍କୁଟର । କେଉଁଠି ଗୋଟେ ସେକେଣ୍ଡ ହ୍ୟାଣ୍ଡ ଗାଡି ଦେଖନ୍ତୁ । ଆପଣ ନଜର ଦେଲେ ମୁଁ ଭାବୁଛି ମିଳିଯିବ ।"

ଚା କପ୍‌ଟିକୁ ଥୋଇ ଦେଇ ମଦନବାବୁଙ୍କ ଉଦ୍ଦେଶ୍ୟରେ କହିବେ, "ଆପଣ ଯଦି ବ୍ୟସ୍ତ ନଥାନ୍ତି, ତେବେ ଟିକିଏ ଜିତେନ୍ ବାବୁଙ୍କ ଘର ଆଡେ ଯିବା । ଆପଣ ଜିତେନ୍ ବାବୁଙ୍କୁ ଜାଣି ନାହାନ୍ତି ? ଭୁବନେଶ୍ୱରରେ ସବୁଠାରୁ ବଡ ବିଲଡିଂ କଣ୍ଟ୍ରାକ୍‌ଟର । ତାଙ୍କୁ ଯଦି ଥରେ ସାକ୍ଷାତ କରିବେ, ଖୁସି ହୋଇ ଯିବେ । ଶହୀଦ ନଗରରର ଲେଭଲକ୍ରସିଂ । ଠିକ୍ ସେଇଠି ଦୋ ମହଲା କୋଠା ।"

ମଦନ ବାବୁ କୌଣସି ଉତ୍ତର ଦେବା ପୂର୍ବରୁ, ସେ ତାଙ୍କ ମଟର ସାଇକେଲ ପାଖରେ ପହଞ୍ଚି ଯାଇଥିବେ ।

ମଦନବାବୁଙ୍କ ପରି ନରେଶ ବାବୁଙ୍କର ଅନେକ ବଂଧୁ । ତାଙ୍କ ହିସାବ ଖାତାରେ ଅନେକ କାମ । କିଏ କେତେବେଳେ ଦରକାର ହେବ, ତାହା ନରେଶ ବାବୁଙ୍କ ଆଖି ଆଗରେ ପ୍ରତ୍ୟେକ ଦିନ ଚା କପ୍‌ରେ ଧୂଆଁ ଉଠି ମିଳାଇ ଯିବା ପରି ମିଳାଇ ଯାଏ ।

ନରେଶ ବାବୁ ତାଙ୍କର ବଂଧୁ ମାନଙ୍କୁ ବାଛିବାରେ ଆଦୌ ଭୁଲ କରନ୍ତିନି । ଓସ୍ତାଦ୍ ଓ ଅଭ୍ୟସ୍ତ ଖେଳାଳୀ ସେ । ମଣିଷ ମାନଙ୍କ ସହିତ ବଂଧୁତାର ଖେଳରେ ଯେତେ ମଜା, ଅନ୍ୟ କେଉଁଠି ମିଳେନି । ପଣସ ଓ ଆମ୍ବଗଛର ଗହଳି ମଧ୍ୟରେ ନିରବରେ ନରେଶ ବାବୁ ଧ୍ୟାନସ୍ଥ ମୁଦ୍ରାରେ ପ୍ରାୟତଃ ବସିଥିବାର ଦେଖାଯାଏ । ଏବଂ ତାଙ୍କର ଯାବତୀୟ ସାଂସାରିକ ଜଂଜାଳ ଘନିଷ୍ଠ ବଂଧୁମାନେ ନିଜ ଉପରକୁ ନେଇ ତାଙ୍କୁ ଅଧିକ ଆଧ୍ୟାତ୍ମିକ ଶକ୍ତି ପାଇବାରେ ସାହାଯ୍ୟ କରିଥାନ୍ତି ।

ପଣସ ଗଛରେ ସହଳିଥିବା ଛୋଟ ଛୋଟ ପଣସ ଆସ୍ତେ ଆସ୍ତେ ବଡ ହୁଏ । ବିଶାଳ ବପୁ ଧାରଣ କରେ । ଗଛରେ ଝୁଲୁଥାଏ କିନ୍ତୁ । ପାଚିଯାଇ ଚାରମହ ମହ ବାସନାରେ ସେ ଇଲାକାକୁ ଚହଟାଇ ଦିଏ । ଚୌକି ଉପରେ ବସି ରହି ମଦନ ବାବୁ ନରେଶବାବୁଙ୍କୁ ଅପେକ୍ଷା କରି ପାଚିଲା ପଣସକୁ ଆଘ୍ରାଣ କରିବା ସମୟରେ କାଳେ ତାଙ୍କ କପାଳରେ ପଣସ ଛିଡିବ ବୋଲି କେବେ କେବେ ଭାବନ୍ତି । ମାତ୍ର ପଣସ ଛିଡେ ନାହିଁ । ହଠାତ୍ ଗଛମାନଙ୍କରୁ ଅଦୃଶ୍ୟ ହୋଇଯାଏ ।

ପଣସ ଗଛରେ ଖୁନ୍ଦି ହୋଇ ଜନ୍ମିବା ଠାରୁ ମହ ମହ ବାସି ଉଭେଇଯିବା ପର୍ଯ୍ୟନ୍ତ ଧ୍ୟାନସ୍ଥ ନରେଶ ବାବୁଙ୍କ ଚେତନାରେ ପରିବର୍ତ୍ତନ ହୁଏନା । ବରଂ ସେହି ଗଛ ମାନଙ୍କର ପୂର୍ବ ଶ୍ରୀ ପରିବର୍ତ୍ତିତ ହୋଇ ଲଣ୍ଡା ଲଣ୍ଡା ଦେଖାଯାଏ ।

ନରେଶ ବାବୁଙ୍କର ଏଇ ସ୍ୱଳ୍ପ ପରିଚୟ ସହିତ ସୂର୍ଯ୍ୟକାନ୍ତ ବାବୁ ଅଭ୍ୟସ୍ତ । ତଥାପି କେଉଁ ଆକର୍ଷଣ ତାଙ୍କୁ ଆଲୋଡିତ କରେ, ତାହା ଏ ଯାଏ ସେ ବୁଝି ପାରି ନାହାନ୍ତି । ମଦନ ବାବୁ, ଜିତେନ୍ ବାବୁ ଓ ଅନ୍ୟ ବଂଧୁ ମାନେ କେଉଁଥିପାଇଁ ନରେଶ ବାବୁଙ୍କ ସହିତ ଏତେ ସମ୍ପର୍କ ବଢାନ୍ତି, ତାହା ସେମାନେ

ସୂର୍ଯ୍ୟକାନ୍ତକୁ କେହି କହି ନାହାନ୍ତି । କିମ୍ବା ସେମାନେ ଏକାଠି ବେଳେ ଆଲୋଚନା କରି ନାହାନ୍ତି ।

ସୂର୍ଯ୍ୟକାନ୍ତ ନରେଶ ବାବୁଙ୍କର ସମାସ୍କନ୍ଧ ବା ସମବୟସର ନୁହଁନ୍ତି । ଉଭୟ କେଉଁ ସୂତ୍ରରେ ଚିହ୍ନା ପରିଚୟ ହୋଇଥିଲେ, ତାହା ଏବେ ଢେର ସ୍ମୃତି ମଧ୍ୟରେ ବୁଡିଗଲାଣି । ତଥାପି ସେଇ ଚିହ୍ନା ପରିଚୟର ବଂଧୁତା ଏବେ ବି ତାଙ୍କୁ ସେ ଘରରୁ ଏ ଘରକୁ ଟାଣି ଆଣେ । ସେଇଥିପାଇଁ ସେ ତାଙ୍କର ନିକଟତମ ବୋଲି ଭାବନ୍ତି ।

ସେତେବେଳେ ବିଷ୍ଣୁପଦ ବଞ୍ଚିଥାନ୍ତି । ତାଙ୍କ ପୁଅ ବାହାଘରେ ବରଯାତ୍ରୀ ହୋଇ ଯିବାର ଥାଏ । ନରେଶ ବାବୁ ବରଯାତ୍ରୀ ହୋଇ ଯିବାରେ ଅଯଥା ବିଳମ୍ବ କରୁଥିବାରୁ ସାମାନ୍ୟ ବିରକ୍ତି ପ୍ରକାଶ କରିଥିଲେ ସୂର୍ଯ୍ୟକାନ୍ତ ।

ବର ତ ସେମାନଙ୍କ ପାଇଁ ଅପେକ୍ଷା କରିବ ନାହିଁ । ନିର୍ଦ୍ଦିଷ୍ଟ ସମୟରେ ଯାଇ ନ ପହଞ୍ଚିଲେ ବିଷ୍ଣୁପଦ ମନରେ ଦୁଃଖ କରିବେ ଓ ଯିବାର କୌଣସି ମଜା ମଧ୍ୟ ରହିବନି ।

ସୂର୍ଯ୍ୟକାନ୍ତଙ୍କର ଏତିକି କଥାରେ ବିଗିଡି ଯାଇଥିଲେ ନରେଶ ବାବୁ । ତାଙ୍କ ମୁହଁରୁ ହଠାତ୍ ଯେଉଁ ଭାଷା ବାହାରିଥିଲା, ତାହା ସୂର୍ଯ୍ୟକାନ୍ତଙ୍କର କେବଳ ଶରୀର ନୁହେଁ ବରଂ ମନ ଓ ଆତ୍ମାକୁ ଆଘାତ ଲାଗିଥିଲା ।

ନରେଶ ବାବୁ ଭ୍ରୁକୁଞ୍ଚନ କରି କହିଥିଲେ, "ବଂଧୁ ହେବା ପାଇଁ ନିଜର ଯୋଗ୍ୟତାକୁ ଦେଖିଛଟି ?

ଏଇ ପଦକ କଥାରେ ଆଖିରେ ଢଳେଇ ଆସୁଥିବା ଲୁହକୁ ସମ୍ବରଣ କରିଥିଲେ ସୂର୍ଯ୍ୟକାନ୍ତ । ତାଙ୍କ ସହିତ ଥିବା ତାଙ୍କର ବଂଧୁ ମଧ୍ୟ ସେଇ କଥାକୁ ଠିକ୍ ଭାବରେ ଗ୍ରହଣ କରି ପାରି ନଥିଲେ । ପରେ ଅବଶ୍ୟ ସେ ଏହାକୁ ଭୁଲି ଯାଇଥିଲେ । ଯେତେହେଲେ ବଂଧୁ ତ ।

ହଠାତ୍ ଅନେକ ଦିନ ତଳର ଏଇ ଘଟଣାଟି ଯଦି ବେଳ ଅବେଳରେ ମନେ ପଡିଯାଏ, ତେବେ ଲାଗେ ଯେପରି କେହି ଜୋର୍‌ରେ ତାଙ୍କ ପିଠିକୁ ଚୁମୁଟି ଦେଉଛି ଏବଂ ସେଇ ଜାଗାକୁ ଆଉଁସି ଦେବା ପାଇଁ ନିଜ ହାତ ପାଉନି । ସୂର୍ଯ୍ୟକାନ୍ତ ସେଇଦିନ ମନ ଆବେଗରେ କେତେ କଥା ଭାବି ଯାଇଥିଲେ । ପୁଣି ଭୁଲିଗଲେ ବିଷ୍ଣୁପଦଙ୍କର ହସ ହସ ମୁହଁ ଦେଖି । ଏଇ ବିଷ୍ଣୁପଦ ଦିନେ ତାଙ୍କୁ ନରେଶ ବାବୁଙ୍କ ସହିତ ପରିଚୟ କରାଇ ଦେଇଥିଲେ ।

ସେ ଥିଲେ ଅତ୍ୟନ୍ତ ପଣ୍ଡିତ, ପ୍ରଖର ବାଗ୍ମୀ । ଓଡିଶା ସରକାରଙ୍କର ଉଚ୍ଚପଦସ୍ଥ ଅଧିକାରୀ ଥାଇ ମଧ, ତାଙ୍କରଅମାୟିକ ବ୍ୟବହାର ମନକୁ ଆନନ୍ଦ ଦିଏ । ଯାହାକୁ ଦେଖିବେ, କୁଣ୍ଢାଇ ପକାଇବେ । ଯେପରି ସଂପର୍କ ଅନେକ ଜନ୍ମର । ତାଙ୍କ ସ୍ନେହ ଡୋରିର ବନ୍ଧନରେ ଯେ କେହି ଆଉ୍ଡା ମାଉ୍ଡା ହୋଇଯିବ ।

ବିଷ୍ଣପଦ ନରେଶ ବାବୁଙ୍କୁ ହାତ ଧରି ଉପରକୁ ନେବାରେ ସାହାଯ୍ୟ କରିଛନ୍ତି । ଯେତେବେଳେ ପ୍ରମୋଶନ ପାଇଁ ନାଁ ଆସିଛି, ବିଷ୍ଣୁପଦ ହିଁ ତାଙ୍କ ପାଇଁ ସେହି ସୁଯୋଗ ସୃଷ୍ଟି କରିଛନ୍ତି ।

ବିଷ୍ଣୁପଦ କେଉଁଠି ଓ କାହାନ୍ତି ନରେଶ ବାବୁ ? ଉତ୍ତର ଓ ଦକ୍ଷିଣ ମେରୁ ବ୍ୟବଧାନ । ସେଇ ବ୍ୟବଧାନ ମଧ୍ୟରେ ସୂର୍ଯ୍ୟକାନ୍ତଙ୍କର ବିଷ୍ଣୁପଦଙ୍କ ପ୍ରତି ଆକର୍ଷଣ ଏତେ ବଢି ଯାଇଥିଲା ଯେ ସେ ନରେଶ ବାବୁଙ୍କୁ ନିଜର ଭାବେ ଗ୍ରହଣ କରି ନେଇଥିଲେ ।

ସୂର୍ଯ୍ୟକାନ୍ତଙ୍କର ନରେଶ ବାବୁଙ୍କର ନଅ ନମ୍ବର ଫ୍ଲାଟରେ ଥିବା ଘଟଣା ମନେ ପଡେ ।

ବିଷ୍ଣୁପଦ ସୂର୍ଯ୍ୟକାନ୍ତଙ୍କୁ ଧରି ସେଠାରେ ପହଞ୍ଚିଲେ । ନରେଶ ବାବୁ କିଛି କହିବା ପୂର୍ବରୁ ବିଷ୍ଣୁପଦ କହିଲେ, ''ଶୁଣ ନରେଶ ! ଆଫ୍ରିକାକୁ ଡେଲିଗେସନ୍ ଯାଉଛି । ମୁଁ ଫାଇଲରେ ତୁମ ନାଁ ଭର୍ତ୍ତି କରି ଦେଇଛି । ଭାକୁଛି ହୋଇ ଯାଇପାରେ ।''

କୃତକୃତ୍ୟ ହୋଇ ନରେଶ ବାବୁ କହିଲେ, ''ସାର । ଆପଣଙ୍କ ଯୋଗୁଁ ମୁଁ ସବୁ କିଛି । ମୋର ଯାହା ପ୍ରତିଷ୍ଠା ଓ ସମ୍ମାନ, ତାହାତ ଆପଣଙ୍କ ଦାନ । ଏ ଦାନର ପ୍ରତିଦାନ ତ ଏ ଜନ୍ମରେ ଆପଣଙ୍କୁ ଦେଇ ପାରିବି ନାହିଁ । କିନ୍ତୁ ଯେ କୌଣସି ଜନ୍ମରେ ଶୁଝିବାକୁ ଚେଷ୍ଟା କରିବି ।''

ହସିଲେ ବିଷ୍ଣୁପଦ ଏକ ଦାର୍ଶନିକର ହସ । ସୂର୍ଯ୍ୟକାନ୍ତଙ୍କୁ ଲକ୍ଷ୍ୟ କରି କହିଲେ, ''ସୂର୍ଯ୍ୟକାନ୍ତ; ଶୁଣିଥା, ନରେଶ କଥା । ତୁମେ ସାକ୍ଷୀ । ମୁଁ ତାକୁ ମୋ ଋଣ ଶୁଝିବାକୁ କହୁନି । ସେ ମୋର ଉତ୍ତରାଧିକାରୀ ହେବ ବୋଲି ମୁଁ ସ୍ଥିର କରିଛି ।''

ତା ପିଇ ଗପ କରୁ କରୁ ପ୍ରାୟ ଡେରି ହୋଇ ଯାଇଥିଲା । ନରେଶ ବାବୁଙ୍କର ବିଷ୍ଣୁପଦଙ୍କ ପ୍ରତି କୃତଜ୍ଞତା ଭାବ କଦଳୀ ଗଛରେ ବାହାରିଥିବା କଦଳୀ କାନ୍ଧି ଭାରାରେ ନଇଁ ଯିବା ପରି ଲାଗୁଥିଲା ।

ବିଷ୍ଣୁପଦ ନିଜର ସରଳତା ବା ଅଧିକ ଆତ୍ମୀୟତା ଯୋଗୁ ନରେଶ ବାବୁଙ୍କୁ ନିଜ ଗୁଣର ଉତ୍ତରାଧିକାରୀ ବୋଲି ମନେ ମନେ କେବଳ ଗ୍ରହଣ କରି ନଥିଲେ ବରଂ ବନ୍ଧୁ ମେଳରେ ଖୁବ୍ ପାଟିରେ ବାରମ୍ବାର ଘୋଷଣା କରିବାକୁ ଭୁଲି ନଥିଲେ ।

X X X

ଗେଟ୍ ଖୋଲି ବାରଣ୍ଡାରେ ପହଞ୍ଚିବା ମାତ୍ରେ ପୋଷ୍ୟ ବିଦେଶୀ କୁକୁର ଭୋ ଭୋ କରି ମାଡି ଆସିଲା । କୁକୁର ଆଧୁନିକ ଆଭିଜାତ୍ୟର ଅଙ୍ଗ ଭାବେ ସ୍ୱୀକୃତ ହେବା ଦିନୁ ଭାରତରେ ବହୁ ସମ୍ପନ୍ନ ଲୋକ ନିଜ ନିଜ ଘରେ କୁକୁର ପୋଷିବାକୁ ଆରମ୍ଭ କରି ଦେଲେଣି ।

ସୂର୍ଯ୍ୟକାନ୍ତ କୁକୁର ଦେଖିବା ମାତ୍ରେ ଭୟ ପାଇଯାନ୍ତି । ତାଙ୍କ ପତ୍ନୀଙ୍କର ବାରମ୍ବାର ଅନୁରୋଧ ସତ୍ତ୍ୱେ ସେ କୁକୁର ପାଳିବାର ସପକ୍ଷରେ ନାହାନ୍ତି । କେବଳ ଭୟ ହେତୁ ନୁହେଁ, ବରଂ କୁକୁର ପାଇଁ ଉଦ୍ଦିଷ୍ଟ ଖର୍ଚ୍ଚକୁ ସେ ମଣିଷର ସେବାରେ ଲଗାଇବାକୁ ଭଲ ପାଆନ୍ତି ।

ନରେଶ ବାବୁଙ୍କ ଘରେ ଏଇ ବିରାଟ କୁକୁରଟିକୁ ଦେଖି ତା ଲାଗି ସେ ହେଉଥିବା ନିତିଦିନିଆ ଖର୍ଚ୍ଚର ଏକ ଅଟକଳ କରିବାରେ ଲାଗିଗଲେ । ବିଶାଳ ବପୁ ସମ୍ପନ୍ନ କୁକୁରଟି ସମଗ୍ର ଘରକୁ ଖେଦି ଯାଇ ନିଜର ପ୍ରଭୁତ୍ୱକୁ ଜାହିର କରି ରଖିଥାଏ ।

ଗେଟ୍ ଖୋଲି ଆସିବା ଠାରୁ ଏ ପର୍ଯ୍ୟନ୍ତ କେହି ଘରେ ଥିବାର ସେ ଦେଖି ନଥିଲେ । କାହାର ପାଟି ଶବ୍ଦ ମଧ୍ୟ ଶୁଣା ଯାଉ ନଥିଲା ।

ଗ୍ରିଲ ଗେଟ୍ ଏ ପାଖରେ କଲିଂ ବେଲ ଦେଇ କେହି ଆସିବେ ବୋଲି ଅପେକ୍ଷା କରିଥିବା ସୂର୍ଯ୍ୟକାନ୍ତଙ୍କ ଉପରକୁ ଭୋ ଭୋ କରି ଚିତ୍କାର କରୁଥିବା କୁକୁର ଗ୍ରିଲ ଦେଇ ଆସି ପାରୁ ନଥିଲା । ଅବଶ୍ୟ ଗେଟ୍ ଖୋଲା ଥିଲେ ପ୍ରଭୁଭକ୍ତ କୁକୁରଟି ସୂର୍ଯ୍ୟକାନ୍ତଙ୍କୁ ଝୁଣି ପକାଇଥାନ୍ତା । ତା ଆଖିର ଚାହାଁଣୀ

ଦେଖି ଚେଂଘ ହୋଇ ଯାଇଥିଲେ ସେ ।

ଅପେକ୍ଷା ରତ ସୂର୍ଯ୍ୟକାନ୍ତ ଦୁଆର ମୁହଁକୁ ଚାହୁଁଥିଲେ । ଗ୍ରିଲ ବାରଣ୍ଡାରେ ସେ ଦିନର ଖବର କାଗଜ ଗୁଡିକ ଗଛତଳେ ଜମା ହୋଇଥିବା ଚରାଟ ଫୁଲ ପରି ବିଞ୍ଚି ହୋଇ ପଡିଥିଲା । କୁକୁରର ବାରମ୍ବାର ଭୁକିବା ସତ୍ତ୍ୱେ ଘର ଦୁଆର ଖୋଲିବାର କୌଣସି ସଙ୍କେତ ଦେଖା ଯାଉ ନଥିଲା । ଘର ଭିତରେ ଚାଲିଥିବା ଟି.ଭି.ର ଧିମା ସ୍ୱର ଗଛ ଉପରେ ପଡିଥିବା ଟୋପା ଟୋପା ବର୍ଷା ମାଟି ଉପରେ ପଡିବା ସ୍ୱର ସହିତ ମିଳାଇ ଯାଉଥିଲା ।

ହାତରେ ଧରିଥିବା ନିମନ୍ତ୍ରଣ କାର୍ଡ ଗ୍ରିଲଦେଇ ବିଞ୍ଚି ହୋଇ ପଡିଥିବା ଖବରକାଗଜ ମାନଙ୍କ ଉପରକୁ ଫିଙ୍ଗିବାକୁ ଯିବା ବେଳେ, ଗେଟ୍ ଖୋଲିବାର ଶବ୍ଦ ଶୁଣି ସେ ବୁଲିକି ଚାହିଁଲେ । ନରେଶ ବାବୁ କେହି ଜଣେ ବଂଧୁଙ୍କ ସହିତ ପଶି ଆସୁଥିବାରୁ ଦେଖି, ହାତରେକାର୍ଡଟି ସେଇମିତି ଅଟକି ରହିଗଲା ।

ସେ ତାଙ୍କୁ ଦେଖା କରି ନିମନ୍ତ୍ରଣ କରିବାକୁ ଆସିଥିଲେ । ଦେଖା ନ ହୋଇଥିଲେ ମନର ଅବଶୋଷ ବହୁତ ବଢି ଯାଇଥାନ୍ତା ।

ଅନେକ ଦିନ ପରେ ଦେଖା ହେବା ସତ୍ତ୍ୱେ ନରେଶ ବାବୁ ସୂର୍ଯ୍ୟକାନ୍ତଙ୍କୁ ଦେଖି ଆଦୌ ଉଦ୍‌ବୁଦ୍ଧିତ ହୋଇ ଉଠି ନଥିଲେ । ତାଙ୍କ ହାତରୁ ନିମନ୍ତ୍ରଣ କାର୍ଡଟି ନେଇ ଠିଆ ଠିଆ ପଢିବା ପରେ ପଚାରିଲେ,

"କେମିତି ଯିବା ଜୁଇବାଣୀ ? ଗାଡି ଠିକ୍ ନକଲେ, ଏତେ ବାଟ କଣ ଯାଇ ହୁଏ । ଯଦି ଗାଡି ମିଳେ, ତେବେ ଦେଖିବା । ମୋର ତ ଅନେକ କାମ । ତଥାପି ଚାକୁଛ ଯେତେବେଳେ... ।"

ସୂର୍ଯ୍ୟକାନ୍ତ ତଳ ବାରଣ୍ଡାରୁ ନରେଶବାବୁଙ୍କୁ ନମସ୍କାର କରି ଫେରି ପଡିଲେ । ବିଷ୍ଣୁପଦଙ୍କ ପାଇଁ ସ୍ମୃତି ସଭାଟିଏ ଆୟୋଜନ କରିବା ତାଙ୍କ ପାଇଁ ସହଜ ସାଧ ନଥିଲା । ଯେତେ ଯେତେ ଚିହ୍ନା ପରିଚୟ, ସମସ୍ତଙ୍କ ଦୁଆରେ ସେ ଚକୁଳିଆ ପଣ୍ଡା ବୁଲିବା ପରି ବୁଲି ଆସିଥିଲେ । ସେ ନରେଶ ବାବୁଙ୍କ ଠାରୁ ଉତ୍ସାହ ଓ ପ୍ରେରଣା ପାଇବେ ବୋଲି ବହୁ ଆଶା କରି, ବର୍ଷା ସତ୍ତ୍ୱେ ଚାରି ନମ୍ବରରୁ ନୟାପଲ୍ଲୀ ଆସିଥିଲେ ।

ମୁହଁ ବୁଲାଇ ଫେରି ଆସୁଥିବା ବେଳେ ଗେଟ୍ ଭିତରକୁ ପଶି ଆସୁଥିଲା ନୂଆ ଧଳା ଫିଆଟ୍ । ନରେଶ ବାବୁ ବଡ ପାଟିରେ କହିଲେ, "ଗାଡିଟାକୁ ବାହାରେ ରଖ, ମା ଯିବ ।"

ସୂର୍ଯ୍ୟକାନ୍ତ ସ୍କୁଟରେ ଷ୍ଟାର୍ଟ କରି ଆସିବା ବେଳେ ତାର ବାଡଘେରା ସେଇ ପ୍ରକାଣ୍ଡକାୟ ଘର ଭିତରୁ କୁକୁରର ଭୋ ଭୋ ଶବ୍ଦ କେବଳ ଶୁଣିବାକୁ ପାଉଥିଲେ ।



# ଆଗକୁ ଅନେକ ରାସ୍ତା

ଅସରାଏ ବର୍ଷା ହଠାତ୍ କଷି ଦେଇଯିବାରୁ ସୌମେନ୍ଦ୍ର ବର୍ଷାତି ପିନ୍ଧିବାକୁ ସମୟ ନ ପାଇ ତିନ୍ତିବାକୁ ବାଧ୍ୟହେଲେ । ଏତେ ଶୀଘ୍ର ବର୍ଷା ବର୍ଷିଯିବ ବୋଲି କିଏ ଜାଣିଥିଲା ? ଘରୁ ଅଫିସକୁ ବାହାରିବାବେଳେ ଆକାଶରେ କେଉଁଠିହେଲେ ବାଦଲ ନଥିଲା । ବର୍ଷା ଦିନ ସତ, କିନ୍ତୁ ବର୍ଷା ହେବାର ସମ୍ଭାବନା ଦିନକୁ ଦିନ କମିଯିବାରେ ଲାଗିଛି । ସାଧବାଣୀ ବୋହୂମାନେ ଆଉ ନିଜର ନାଲି ଗୁଲୁଗୁଲୁ ଚେହେରାକୁ ଦେଖାଇ ମଲ୍ଲୀବୁଦାତଳେ ବୁଲୁଥିବାର କେହି ଦେଖୁନାହାନ୍ତି । ସେମାନଙ୍କୁ ଦେଖିବାବେଳେ ତାଙ୍କର ପିଲାଦିନର ଅନେକ ସ୍ମୃତି ମନରେ ଚେଇଁଉଠେ । ତାଙ୍କ ବୋଉ କିପରି ବିରକ୍ତ ହୋଇ ତାଙ୍କୁ ଗାଳି ଦେଉଥିଲେ ଏବଂ ପାଠପଢାରେ ମନ ଦେବାକୁ ତାଗିଦ୍ କରି ଦେଉଥିଲେ, ତାହା ଭାବିଲେ ଆଖିରେ ଲୁହ ଢଳଢଳ ହୋଇଯାଏ ।

ବର୍ଷାଟା ଏତେ ଜୋରରେ କାଟି ଦେଲା ଯେ, ସୌମେନ୍ଦ୍ର ଅଧାତିନ୍ତିବା ଅବସ୍ଥାରେ ଆଉ ଆଗକୁ ନ ଯାଇ ଆଚାର୍ଯ୍ୟ ବିହାର ଛକଠାରେ ଲମ୍ବି ଯାଇଥିବା ଦୋକାନ ବାରଣ୍ଡାରେ ଠିଆ ହେବାକୁ ବାଧ୍ୟ ହେଲେ । ସେ କେବଳ ଏକାଥିଲେ ନୁହେଁ ବରଂ ବର୍ଷାରୁ ବଞ୍ଚିବା ପାଇଁ ଅନେକ ସେହି ବାରଣ୍ଡାରେ ଆଶ୍ରୟ ନେଇଥିଲେ । ଆଧୁନିକ ଯୁଗରେ ସ୍କୁଟର ମାଳମାଳ ସହରର ସବୁ ଭୂଇଁକୁ ମାଡି ବସିବା ପରି ଦୋକାନ ବାରଣ୍ଡାର ସୀମିତ ପରିଧିଟି ପାଦ ଗୁଡିକରେ ପୂରି ଯାଇଥିଲା ।

ଅନ୍ୟ ମନସ୍କ ଭାବରେ ସୌମେନ୍ଦ୍ର ସେହି ବର୍ଷାକୁ ଚାହିଁ ରହିବାବେଳେ ହଠାତ୍ କେହି ପରସ୍ପର ମଧ୍ୟରେ ଉଚ୍ଚରେ କଥାହେଉଥିବାର ଶୁଣିଲେ ।

''ମାନବେନ୍ଦ୍ର ବାବୁ, ଆଜି ପରୀକ୍ଷାଫଳ ପ୍ରକାଶିତ ହେଲା । +୨ ବିଜ୍ଞାନ । ଝିଅ

ପରୀକ୍ଷା ଦେଇଥିଲା । ଦେଖିଲି ପାସ୍ କରିଯାଇଛି । ଆଜିକାଲି ଯେପରି ଖାତାଦେଖା ଚାଲିଛି ନା ?''

''ଛାଡନ୍ତୁ; ସେ କଥା ନ କହିଲେ ଭଲ । କେତେ ନମ୍ବର ରଖିଛି ଦେଖିଲେ, ସିଟ୍ ମିଳିବ ନା ମିଳିବନି, ସେ ସଂପର୍କରେ ଚିନ୍ତା ।''

ବିଜ୍ଞାନ ପରୀକ୍ଷାଫଳ ବାହାରିବା ସମ୍ବାଦ ସୌମେନ୍ଦ୍ରଙ୍କୁ ଅଫିସକୁ ଯିବାପାଇଁ ହେଉଥିବା ବିଳମ୍ବଜନିତ ମାନସିକ ଦୁଃଖକୁ ଦୂର କରି ପକାଇଲା । କମିକମି ଆସୁଥିବା ବର୍ଷାରେ ସ୍କୁଟରକୁ ଘରମୁହାଁ କରିବାବେଳେ ଝିଅ ପରୀକ୍ଷାଫଳ କଣ ହୋଇଛି ଜାଣିବାପାଇଁ ମନ ଉଦ୍‌ବେଗ ହୋଇ ଉଠିଥିଲା ।

ଖୁବ୍ ଜୋରରେ ହାତର ନାଡି ଧକ୍‌ଧକ୍ କରିବାକୁ ଆରମ୍ଭ କରି ଦେଇଥାଏ । ଏକମାତ୍ର ଝିଅର ପରୀକ୍ଷାନେଇ ଆଦୌ ଚିନ୍ତିତ ନଥିବା ବା କେବେ ଚିନ୍ତା କରି ନଥିବା ସୌମେନ୍ଦ୍ର ହଠାତ୍ ପରୀକ୍ଷାଫଳ ଜାଣିବା ପାଇଁ ବ୍ୟଗ୍ର ହୋଇ ଉଠିବା ତାକୁ ମଧ ଅସ୍ୱାଭାବିକ ଜଣାଯାଉଥାଏ ।

ତାର ଯେ ରୋଲ ନମ୍ବର ମନେ ନାହିଁ । ରେଜଲ୍ଟ କେମିତି ବୁଝିବ । ମନକୁ ମନ ସ୍ୱଗତୋକ୍ତି କଲା ସୌମେନ୍ଦ୍ର ।

ନା, ତାକୁ ଘରକୁ ଯିବାକୁ ହେବ । ବେଶି ଦୂର କାଉନସିଲ ଅଫିସ ନୁହେଁ । ରେଜଲ୍ଟ ବାହାରିଥିବା ପୁସ୍ତିକାଟିଏ କିଣିନେବା ଭଲ । କାଉନ୍‌ସିଲ ଅଫିସର ଭିଡ ଭିତରେ ବହିଟିଏ କିଣିବାର ପେଲାପେଲି ତାକୁ ବହୁଦିନ ତଳେ ଶ୍ରୀୟା ସିନେମା ହଲରେ ସଂଘର୍ଷ ଫିଲ୍ମର ଟିକେଟ୍ କିଣିବା ପରି ଲାଗୁଥାଏ ।

ସେତେବେଳେ ସେ ଯୁବକ । କାଉନସିଲ ଠାରେ ତା ଝିଅ ଓ ପୁଅ ବୟସର ପିଲାଙ୍କ ଭିତରେ ତାକୁ କେମିତି ମାଡିମାଡି ପଡୁଥାଏ । କେହି କେହି ତା ଆଡକୁ ଲକ୍ଷ୍ୟ କରି ପଚାରି ଦେଉଥାନ୍ତି, ''କଣ ମଉସା । ପରୀକ୍ଷା ଦେଇଛନ୍ତି କି ?'' ଯେମିତି ତା ବୟସଟା ପରୀକ୍ଷା ଦେବାର ବୟସ ନୁହେଁ ।

ପରୀକ୍ଷା ଦେବା ପାଇଁ ବୟସର ଆବଶ୍ୟକତା ସଂପର୍କରେ ତାର ଏଯାବତ୍ ଥିବା ଧାରଣା ହଠାତ୍ ପୁଣି ଓଲଟପାଲଟ ହୋଇଯାଏ ।

ଜୀବନଯାକ ତ ପରୀକ୍ଷା । ବାଳ ଗୋଟି ଗୋଟି ପାଚି ଝୋଟ ହୋଇଗଲେ ହେଁ ଜୀବନର ପରୀକ୍ଷା ସରେନି ।

ଏପିଲା କେଉଁ ପରୀକ୍ଷା କଥା କହୁଛି ? +୨ ବିଜ୍ଞାନ କଥା ବୋଧହୁଏ । ପରୀକ୍ଷା ବୋଇଲେ କେବଳ ସ୍କୁଲ ବା କଲେଜ ପରୀକ୍ଷା କଥା ଭାବିବେ ।

ଲମ୍ବା କ୍ୟୁରେ ଥିବା ତରୁଣମାନେ ନିଜ ନିଜ ଭିତରେ ଶକ୍ତି ପ୍ରଦର୍ଶନ କରିବା ବେଳେ ସୌମେନ୍ଦ୍ରଙ୍କୁ ଅଗତ୍ୟା ବେଳେବେଳେ କ୍ୟୁ ବାହାରେ ଦେଖିବାକୁ ମିଳୁଥାଏ ।

ଝିପିଝିପି ବର୍ଷା ସତ୍ତ୍ୱେ କାଉନସିଲ ଅଫିସ୍ ବାରଣ୍ଡାରେ ଛାତ୍ର ମାନଙ୍କର ଭିଡ ଝଡିପୋକ

ପରି ବଢ଼ିବାରେ ଲାଗିଥାଏ । କାଉଣ୍ଟରରେ ଦଶଟଙ୍କାରେ ମିଳୁଥିବା ରେଜ୍‌ଲଟ ଖାତାବିକ୍ରୀର ଗତି ଧିର ଓ ମନ୍ଥର ହେତୁ ବାହାରେ ଅଧିକ ହୋ ହଲ୍ଲାକୁ ରୋକିବା ପାଇଁ ପୁଲିସମାନେ ଲମ୍ବା ଲମ୍ବା ବାଡ଼ି ଧରି ମେଲାମେଲା ହେଉଥାନ୍ତି । ଏବଂ ଅଯଥା ଭୟ ସଞ୍ଚାର କରିବା ପାଇଁ ନିଜ ନିଜର ବାଡ଼ିର ସଦ୍‌ବ୍ୟବହାର କରିବାକୁ ଛାତ୍ରମାନଙ୍କ ଆଡ଼କୁ ମାଡ଼ି ଆସୁଥାନ୍ତି ।

ପକେଟରୁ ଶହେ ଟଙ୍କିଆ ନୋଟଟି ବଢ଼ାଇଦେଲେ ସୌମେନ୍ଦ୍ର । ମନିପର୍ସ ଯେତେବେଳେ ଖୋଲିଲେ, ରେଜାଟଙ୍କା ଗୁଡ଼ିକ ଉଭାନ୍ ହୋଇଯାଇଥାଏ । ପତ୍ନୀ ସୁରମାଙ୍କ ଠାରୁ ପୁଅ ସଂଚିତ ପର୍ଯ୍ୟନ୍ତ ତାଙ୍କ ମନି ପର୍ସ ଉପରେ ସମସ୍ତଙ୍କର ଅଖଣ୍ଡ ଅଧିକାର । କାଉଣ୍ଟର କ୍ଳର୍କ ଦଶଟଙ୍କା ରେଜା ନ ଦେଲେ ରେଜଲ୍‌ଟ ଖାତା ଦେବା ସମ୍ଭବ ହେବନାହିଁ ନ କହିଲେ ମଧ ଭ୍ରୁକୁଞ୍ଚନ କରି କହିଲେ ଆଜ୍ଞା, ଦଶଟଙ୍କିଆ ଖଣ୍ଡେ ଦିଅନ୍ତୁ । ଶହେ ଟଙ୍କା କିଏ ଭଙ୍ଗାଇଦେବ ?

ସେ ଅବଶ୍ୟ ମୁଣ୍ଡ ଉଠାଇ ସୌମେନ୍ଦ୍ରଙ୍କୁ ଚାହିଁ ନଥିଲେ । ଅତ୍ୟନ୍ତ ନମ୍ର ଓ ଧୀର ଗଳାରେ ସୌମେନ୍ଦ୍ର ନିଜର ଅକ୍ଷମତା ପ୍ରକାଶ କରିବା ସହିତ, ଅତି କାକୁସ୍ଥ ହୋଇ ଶହେଟଙ୍କା ବଦଳରେ ରେଜଲଟ୍ ଖାତା ଦେବାର ଅନୁରୋଧକୁ ଦୋହରାଇଲେ ।

ପଛରୁ ବଡପାଟିରେ କେହି କହୁଥାଏ ମଉସା ଡେରି କିଆଁ କରୁଛ ? ବୁଢ଼ା ବୟସରେ ପରୀକ୍ଷା ଦେଇ, ରେଜଲ୍‌ଟ ନେବାକୁ ବିଳମ୍ବ କାହିଁକି ?

ପଛକୁ ଚାହିଁ କିଏ କଣ କହିଲା ଜାଣିବାକୁ ସୌମେନ୍ଦ୍ରଙ୍କର ଆଗ୍ରହ ନଥାଏ ।

ହାତରେ ରେଜଲ୍‌ଟ୍ ଖାତାଟି ଧରି ବହୁ ଈପ୍‌ସିତ ମନୋବାଞ୍ଛା ପୂର୍ଣ୍ଣ ହେଲା ବୋଲି ବିଚାର କରି ସୌମେନ୍ଦ୍ର ସ୍କୁଟର ଆଡ଼କୁ ମାଡ଼ିଗଲେ ।

ଆଜି ଆଉ ଅଫିସ ଯିବା ସମ୍ଭବ ନୁହେଁ । ହାତ ଘଣ୍ଟାରେ ଏଗାରଟା । ଅଫିସ୍‌କୁ ଟେଲିଫୋନଟେ କରି ଦେଇଥିଲେ ମଧ ହୋଇଥାନ୍ତା ।

ଘର ସାମନାରେ ସ୍କୁଟର ଷ୍ଟାଣ୍ଡକରି, ବଡପାଟିରେ ଚିତ୍କାର କରି ଘରଭିତରକୁ ପଶିଗଲେ । ମା ଝିଅ ଦୁହେଁ ହସଖୁସି ହୋଇ ଖାଇ ବସିଥିବାବେଳେ ହଠାତ୍ ରେଜଲଟ୍ ଧରି ବାପାଙ୍କର ପ୍ରବେଶ, ସେମାନଙ୍କର ଉତ୍କଣ୍ଠାକୁ ବହୁଗୁଣରେ ବଢ଼ାଇ ଦେଲା ।

ଅଧାଖିଆ ଅବସ୍ଥାରେ ହାତରୁ ରେଜଲଟ୍ ଖାତାଟା ଟାଣିନେଇ ଯେତେବେଳେ ଫଳ ଦେଖିଲା, ହଠାତ୍ ଝିଅ ସୁପ୍ରିୟାର ମନ ଭାରାକ୍ରାନ୍ତ ହୋଇଗଲା ।

ବାପା, ମୋ ରୋଲ ନମ୍ବର ଯେ ଏହା ଭିତରେ ନାହିଁ ।

ତନ୍ନତନ୍ନ କରି ସୌମେନ୍ଦ୍ର ଝିଅ କହୁଥିବା ରୋଲନମ୍ବର ସେହି ରେଜଲଟ୍ ଖାତାକୁ ଖୋଜିବାରେ ଲାଗିଥିଲେ ।

କେତେ କେତେ ରୋଲ ନମ୍ବର । ଝିଅ ନମ୍ବରର ଆଗ ଓ ପଛ ପ୍ରଥମଶ୍ରେଣୀ ଭିତରେ ରହିଥିବା ବେଳେ, ସୁପ୍ରିୟା ନମ୍ବର ସୌମେନ୍ଦ୍ରଙ୍କ ଆଖିଆଗରେ ଆଦୌ ଦେଖାଯାଉନଥିଲା ।

ବାରମ୍ବାର ଚଷମା କାଚକୁ ପୋଛି, ସେ ଦେଖିବାକୁ ଚେଷ୍ଟା କରୁଥିଲେ ।

ଟେବୁଲ ଉପରେ ଭାତଥାଳି ସେଇମିତି ଥୁଆ ହୋଇଥିଲା । ବିଛଣା ଉପରେ ଆଖି ମାଡି କାନ୍ଦୁଥିଲା ସୁପ୍ରିୟା । ମାଟ୍ରିକ ପରୀକ୍ଷାରେ ଶତକଡା ପଂଚାଅଶି ନମ୍ବର ରଖିଥିବା ସୁପ୍ରିୟା ନିଜର ଆତ୍ମବିଶ୍ୱାସ ଉପରେ ଧିକ୍କାର କରୁଥିଲା ।

ସୌମେନ୍ଦ୍ର ତାକୁ କଣ କହି ସାନ୍ତ୍ୱନା ଦେବେ, କିଛି ବିଚାର କରିନପାରି ସାମନାରେ ଟଙ୍ଗା ହୋଇଥିବା ସ୍ୱାମୀ ବିବେକାନନ୍ଦଙ୍କର ଫଟୋଟିକୁ ଶୂନ୍ୟଦୃଷ୍ଟିରେ ଚାହିଁ ରହିଥିଲେ ।

\+ + + +

ଖବରକାଗଜ ପୃଷ୍ଠାରେ କାଉନ୍‌ସିଲ ପରୀକ୍ଷା ଫଳରେ ବ୍ୟାପକ ହେରଫେର, ଜାଲିଆତିର ସମ୍ବାଦ ସମଗ୍ର ରାଜ୍ୟରେ ଚର୍ଚ୍ଚାର ବିଷୟ ହୋଇଯାଇଥାଏ । କେଉଁ କେଉଁ କଲେଜ ଖାତରେ କେମିତି କେମିତି ମାର୍କ ଦିଆଯାଉଛି, ତାହା ତଦନ୍ତ ପାଇଁ ବିଭିନ୍ନ ଛାତ୍ର ସଂଗଠନମାନେ ଶୋଭାଯାତ୍ରା ଓ ଦାବୀ କରିବାକୁ ଆରମ୍ଭ କରି ଦେଇଥାନ୍ତି । ଅବଶ୍ୟ ଏହା କାଉନ୍‌ସିଲ ନିମିତ୍ତ ନୂଆ କଥା ହୋଇନଥାଏ । ଏଇମିତି ପ୍ରତ୍ୟେକ ବର୍ଷହୁଏ । କିନ୍ତୁ ଏବର୍ଷର ବ୍ୟାପକ ହେରଫେର, ପ୍ରଶ୍ନପତ୍ର ଲିକ୍, ପୁନର୍ବାର ପରୀକ୍ଷା, କେନ୍ଦ୍ରମାନଙ୍କରେ ଆ ଖିବୁଜା କପି ନିତିଦିନିଆ ଘଟଣା ହେତୁ, ବୁଦ୍ଧିଜୀବୀ ମାନଙ୍କୁ ଏହା ଆଦୌ ପ୍ରଭାବିତ କରି ପାରିଥିବା ଜଣା ପଡୁନଥାଏ ।

ମନ୍ତ୍ରୀ ବିଧାନସଭା ଗୃହରେ ବାରମ୍ବାର ସଫେଇ ଦେଇ, ଖାତା ଦେଖାରେ ଦୋଷତ୍ରୁଟି ପାଇଁ ଦୋଷୀକୁ ଦଣ୍ଡଦେବାକୁ ଘୋଷଣା କରି ସାରିଥାନ୍ତି । ବିରୋଧୀ ଦଳ ତାଙ୍କ ଇସ୍ତଫା ଦାବୀର ହଇଚଇ ମଧ୍ୟରେ ମନ୍ତ୍ରୀଙ୍କର ଉପରୋକ୍ତ ଘୋଷଣା ସରି ଯାଇଥାଏ ।

ହାଇକୋର୍ଟରେ ଅର୍ଜି ପରେ ଅର୍ଜି ଦାଖଲ ହେବାରେ ଲାଗିଥାଏ । ସବୁ ଆଶା ଓ ସାନ୍ତ୍ୱନା ନାଲି ଗମ୍ବୁଜ ମଧ୍ୟରୁ ମିଳିବ ବୋଲି ବିଶ୍ୱାସ ସ୍ଥାପନ କରିବାରେ ଲାଗିଥାନ୍ତି ଲୋକମାନେ ।

ବାତାବରଣରେ ବର୍ଷାଜନିତ ଶୀତଳତା ଲାଗି ରହିଥିଲେ ହେଁ ରାଜନୈତିକ ଉଷ୍ଣତା କ୍ରମଶଃ ବଢ଼ିବାରେ ଲାଗିଥାଏ ।

ସୌମେନ୍ଦ୍ର ଚାହିଁ ରହିଥାନ୍ତି ଝିଅ ସୁପ୍ରିୟାକୁ । ଅନବରତ ଆଖିରୁ ଲୁହଝରି ଲାଲ ପଡି ଯାଇଥାଏ ଆଖି ଦୁଇଟି । ସଦ୍ୟଜାତ ଗୋଲାପ କଢିଟି କୀଟଦ୍ରଂଷ୍ଟ ହୋଇ ଝଡି ପଡିବା ପରି ସୁପ୍ରିୟା ଦେଖାଯାଉଥାଏ ।

କଥାକଥାକେ ଉପଦେଶ ଦେବାରେ ଅଭ୍ୟସ୍ତ ସୌମେନ୍ଦ୍ରଙ୍କ ପାଟିରୁ କୌଣସି ବାକ୍ୟ ପଇଟୁ ନଥାଏ । ସେ ସୁପ୍ରିୟା ସହିତ ଦେଖୁଥାନ୍ତି ଅଗଣିତ ଯୁବକ ଯୁବତୀମାନଙ୍କୁ, ଯେଉଁମାନଙ୍କ ଆଖିର ଲୁହ ଆଖି ଦୁଇଟିକୁ କୋଟରଗତ କରି ପକାଇଥାଏ ଏବଂ ବାତ୍ସଲ୍ୟ ମମତାର ଆନନ୍ଦରେ ଆନନ୍ଦିତ ହେବାକୁ ଅପେକ୍ଷାମାଣ ପିତାମାତାଙ୍କର ସ୍ତବ୍ଧ ନୀରବତା ।

କାହାକୁ ପ୍ରବୋଧିବେ ସୌମେନ୍ଦ୍ର ? ନିଜକୁ ନା ନିଜ ରକ୍ତମାଂସରେ ଗଢା ହୋଇଥିବା ଝିଅକୁ ନା ସେଇଦିନ କ୍ୟୁରେ ଛିଡାହୋଇ ଅପେକ୍ଷା କରିଥିବା ଅଗଣିତ ତରୁଣମାନଙ୍କୁ ?

କାହାକୁ ଦୋଷଦେବେ ସେ ? ନିଜ ନିଜର ଭାଗ୍ୟକୁ ନା ବ୍ୟବସ୍ଥାକୁ ? ଜୀବନକୁ

ଦର୍ଶନଭଙ୍ଗୀରେ ଦେଖୁଥିବା ସୌମେନ୍ଦ୍ର ବୋଧହୁଏ ଏଥିପାଇଁ କୌଣସି ବିଚାରଯୋଗ୍ୟ ଦର୍ଶନ ଖୋଜି ପାଉନଥିଲେ । କେବଳ ଅନୁଭବ କରୁଥିଲେ ମାନବିକ ଚେତନାରେ ପଶୁସୁଲଭ ପ୍ରବୃତ୍ତିର ତାଣ୍ଡବ ନୃତ୍ୟ । ସଭ୍ୟତାର ବିକାଶରେ ପ୍ରତିଦିନ ନୃଶଂସଭାବେ ପରସ୍ପରକୁ ହତ୍ୟା କରୁଥିବା ମଣିଷ ଯାହାର ଚେତନାର ଉତ୍ତରଣର ସ୍ୱରରେ ବିଶ୍ୱଭ୍ରାତୃତ୍ୱର ଜୟଗାନ ।

ସୁପ୍ରିୟାର ମୁଣ୍ଡକୁ ସାଉଁଳି ଦେଲେ ସୌମେନ୍ଦ୍ର । ଧିରେ ଧିରେ କହିଲେ, ''ଉଠ ମା ! ଆହୁରି ବହୁବାଟ ଯିବାକୁ ହେବ ଯେ ।''

